ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦ ଦ୍ୱାରା ଷଷ୍ଠ ଶ୍ରେଣୀର
ଅତିରିକ୍ତ ସାହିତ୍ୟରୂପେ ଅନୁମୋଦିତ ।

# ଜାଣିବା କଥା

( ଷଷ୍ଠ ଶ୍ରେଣୀ ନିମନ୍ତେ ଅତିରିକ୍ତ ସାହିତ୍ୟ )

ଦ୍ୱିତୀୟ ଭାଗ

ଲେଖକ—
ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ପ୍ରଥମ ମୁଦ୍ରଣ

ପ୍ରକାଶକ—
ଇଷ୍ଟର୍ଣ୍ଣ ପବ୍ଲିସର
କଟକ-୨

ମୂଲ୍ୟ—ଟ ୧.୨୫ ନୂ. ପ. ( ଏକ ଟଙ୍କା ଚାରିଅଣା )

# ସୂଚୀପତ୍ର

# ପିମ୍ପୁଡ଼ିଙ୍କ ରାଜ୍ୟ ଓ ରାଜ୍ୟଶାସନ

ଆମେ ହୁଏ ତ ପ୍ରତିଦିନ ପାଦତଳେ ଶହଶହ ପିମ୍ପୁଡ଼ି ଦଳି ମାରି ପକାଉଥାଉଁ । ଆମର ଧାରଣା, ପିମ୍ପୁଡ଼ି ଭଳି କ୍ଷୁଦ୍ରଜୀବ, ଦୁର୍ବଳ ପ୍ରାଣୀ ପୃଥିବୀରେ ଆଉ କେହି ନାହାନ୍ତି । ତେଣୁ କାହାରିକୁ ଅତି ହେୟ ମନେକଲେ କହୁଥାଉଁ "ମୋ ଆଗରେ ସେ ପିମ୍ପୁଡ଼ିଟାଏ, ମୋର କଅଣ ବା କରିବ ?"

କିନ୍ତୁ ପିମ୍ପୁଡ଼ିକୁ ଯେତେ ହୀନ, ଦୁର୍ବଳ ମନେକର ନା କାହିଁକି; ତା ପରି ଜୀବ ଏ ଦୁନିଆରେ ଆଉ କେହି ନାହାନ୍ତି । ଖାଲି କଅଣ ଜୀବ ? ସେ ଯେପରି ବୁଦ୍ଧିଆ, ସେହିପରି ପରିଶ୍ରମୀ ଓ ସାହସୀ; ପୁଣି ମିଳିମିଶି ଏକାଠି ସମାଜରେ ଚଳିବାରେ ଖୁବ୍ ଦକ୍ଷ । ସେମାନଙ୍କ ରାଜ୍ୟଶାସନ-ପ୍ରଣାଳୀ ମଧ୍ୟ ଅତି ଚମତ୍କାର ।

ପିମ୍ପୁଡ଼ିଙ୍କ ସମ୍ପର୍କରେ ସବୁ କଥା ତନ୍ନତନ୍ନ କରି ଜାଣିବା ଲାଗି ଅନେକ ପଣ୍ଡିତ ବହୁଦିନ ହେଲା ଉଦ୍ୟମ କରି ଆସୁଛନ୍ତି । ସେ ସବୁ କଥା ଲେଖିବସିଲେ ଗୋଟାଏ ବଡ଼ ପୁରାଣ ହେବ । ସେମାନଙ୍କ ମତରେ ପୃଥିବୀରେ ପ୍ରାୟ ତିନି ହଜାର ପାଞ୍ଚ ଶହ ଜାତିର ପିମ୍ପୁଡ଼ି ଅଛନ୍ତି; ଏହାଠାରୁ ମଧ୍ୟ ଆଉ ଅଧିକ ଜାତିର ଥାଇପାରନ୍ତି ।

ଆମ ଦେଶରେ ସାଧାରଣତଃ ସରୁ ନାଲି ପିମ୍ପୁଡ଼ି, କଳା ପିମ୍ପୁଡ଼ି, ଡଗର ପିମ୍ପୁଡ଼ି, ଝଇ, ଜନ୍ଦା, କାଇଜନ୍ଦା ବା ନାଲି ଜନ୍ଦା— ଏହିପରି କେତେ ଜାତିର ପିମ୍ପୁଡ଼ି ବା ସେମାନଙ୍କ

ଜାତିଭୁଇ ଦେଖାଯାଇଥାନ୍ତି । ସେମାନଙ୍କ ଭିତରେ ସରୁ ନାଲି ପିମ୍ପୁଡ଼ି ପ୍ରଧାନ ।

## ପମ୍ପୁଡ଼ିଙ୍କ ବଳ

ପିମ୍ପୁଡ଼ିଟି ଦେଖିବାକୁ ଅତି ସାନ; ମାତ୍ର ତା ଦେହରେ ଏତେ ବଳ ଯେ, ତାହା ଆମ୍ଭେ କଳ୍ପନା କରିପାରିବା ନାହିଁ ।



ଗୋଟିଏ ପିମ୍ପୁଡ଼ି ତା ଦେହର ଓଜନଠାରୁ ଚାରି ଶହ ଗୁଣ ଅଧିକ ଓଜନର ଜିନିଷ ଅକ୍ଲେଶରେ ବୋହିନେଇ ଚାଲିଯାଏ । ପଣ୍ଡିତମାନେ କହନ୍ତି, ପିମ୍ପୁଡ଼ିର ଆକାର ଯଦି ମଣିଷ ପରି ହୋଇପାରନ୍ତା, ତେବେ ସେ ତିରିଶ ଟନ ( ୧ ଟନ = ପ୍ରାୟ ୨୭ ମହଣ ) ଓଜନର ଜିନିଷ ଅକ୍ଲେଶରେ ବୋହିନେଇ ପାରନ୍ତା । ତାର ବଳ ସେତେବେଳେ କେତେ ହୋଇଥାନ୍ତା, ତାହା ଏହି ହିସାବରୁ ଅନୁମାନ କରିଦେବ ।

## ପିମ୍ପୁଡ଼ିଙ୍କ ଏକତା

ପିମ୍ପୁଡ଼ିଙ୍କ ଭିତରେ ଯେଉଁଳି ଏକତା ଅଛି, ତାହା ଅନ୍ୟ କୌଣସି ପ୍ରାଣୀଠାରେ ଦେଖାଯାଏ ନାହିଁ । ଗୋଟିଏ ଗୋଟିଏ ଦଳରେ ହଜାର ହଜାର ପିମ୍ପୁଡ଼ି ଏକାଠି ରହିଥାଆନ୍ତି । ଅନ୍ୟ ଦଳ ସହିତ ଲଢ଼େଇ କରିବାକୁ ହେଲେ ବା ଖାଦ୍ୟଦ୍ରବ୍ୟ ସଂଗ୍ରହ କରିବାକୁ ହେଲେ, ସେମାନେ ଏକଯୁଟ ହୋଇଯାଆନ୍ତି । ତାଙ୍କ ଦଳର ଗୋଟିଏ ପିମ୍ପୁଡ଼ି କୌଣସି କାମରେ ଲାଗିଥିବାର ଦେଖିଲେ, ସେମାନେ ଯେଉଁ କାମରେ ଯାଉଥାଆନ୍ତୁ ନା କାହିଁକି, ତାହା ଛାଡ଼ି ପୂର୍ବର ପିମ୍ପୁଡ଼ିଟିକୁ ସାହାଯ୍ୟ କରିବେ ।

ବଡ଼ ବଡ଼ ସାପ, ପକ୍ଷୀ ବା ଅନ୍ୟ ଜୀବଜନ୍ତୁଙ୍କ ପିଲାମାନଙ୍କୁ ଅସଂଖ୍ୟ ପିମ୍ପୁଡ଼ି ଏକସମୟରେ ଘେରିଯାଇ ମାରି ପକାଉଥିବାର



[ ପିମ୍ପୁଡ଼ିଦଳ କବଳରେ ଧ୍ୱଂସ ସାପ ଓ ଗୋଟିଏ ଚଢ଼େଇ ]

ବହୁତ ସ୍ଥାନରେ ଦେଖାଯାଏ । ଗୋଟିଏ ସାପ ବା ଚଢ଼େଇ ତୁଳନାରେ ପିମ୍ପୁଡ଼ି କେତେ ସାନ; ତଥାପି ପିମ୍ପୁଡ଼ିଗୁଡ଼ିକ ଏକଯୁଟ ହୋଇ ଏକସମୟରେ ଆକ୍ରମଣ କରୁଥିବାରୁ ସେମାନେ ଅଚଳ ହୋଇ ପଡ଼ନ୍ତି; ଶେଷରେ ଜୀବନ ହରାନ୍ତି ।

ନିଜ ଦଳର ପିମ୍ପୁଡ଼ିଙ୍କୁ ସାହାଯ୍ୟ କରିବା ଲାଗି, ନିଜ ଦଳର ଉନ୍ନତି ଲାଗି ସେମାନେ ଯେ କୌଣସି ବିପଦ ବରଣକରନ୍ତି । ଯେ କେହିବି ବ୍ୟକ୍ତି ପିମ୍ପୁଡ଼ିଙ୍କ ଗତିବିଧି ଭଲରୂପେ ଲକ୍ଷ୍ୟକଲେ ପ୍ରତିଦିନ ଏହାର ଉଦାହରଣ ପାଇପାରିବ ।

ଜଣକ ଘରେ ବହୁତ ପିମ୍ପୁଡ଼ି ଥିଲେ । ସେ ଯେଉଁଠାରେ ଯେଉଁ ଖାଦ୍ୟଦ୍ରବ୍ୟ ରଖୁଥିଲେ, ପିମ୍ପୁଡ଼ିଗୁଡ଼ିକ ତାହା ଖାଇ

ଯାଉଥିଲେ । ଥରେ ସେ ଖାଦ୍ୟଦ୍ରବ୍ୟ ରଖିବାକୁ ବହୁତ ଭାବଚିନ୍ତା ଗୋଟିଏ ଉପାୟ ସ୍ଥିରକଲେ । ଘର ଚଟାଣରେ ବହୁତ ସ୍ଥାନ ମାଡ଼ି ଅଠାଳିଆ ବାର୍ଣ୍ଣିସ ରଙ୍ଗ ବୋଳିଦେଲେ । ତା ମଝିରେ ଗୋଟିଏ ବଡ଼ ପାଣିପାତ୍ର ରଖିଲେ । ସେହି ପାତ୍ର ଉପରେ ଟେବୁଲ ଓ ଟେବୁଲ ଉପରେ ଗୋଟିଏ କଂସାଭିତରେ ଖାଦ୍ୟଦ୍ରବ୍ୟ ଘୋଡ଼ାଇ ରଖିଲେ ।

ପରଦିନ ସେ ଯାଇ ଦେଖିଲେ, ସେ କଂସାରେ ଅତି ଅଳ୍ପ ଖାଦ୍ୟ ଅଛି ଓ ସେଠାକୁ ପିମ୍ପୁଡ଼ି ଧାଡ଼ି ଲାଗିଛନ୍ତି । ତଳେ ଯେଉଁ ବାର୍ଣ୍ଣିସ ରଙ୍ଗ ଦିଆଯାଇଥିଲା, ସେଥିରେ ଗୋଟିଏ ଧାଡ଼ି ପିମ୍ପୁଡ଼ି ଲାଖିରହି ମରିଯାଇଛନ୍ତି । ପଛକୁ ପଛ ପିମ୍ପୁଡ଼ିଗୁଡ଼ିକ ଏଭଳି ଭାବରେ ଲାଖି ରହିଛନ୍ତି ଯେ, ତାହା ଗୋଟିଏ ରାସ୍ତାପରି ହୋଇଯାଇଛି । ସେମାନଙ୍କ ଉପରେ ଚଢ଼ି ପିମ୍ପୁଡ଼ି ଧାଡ଼ି ଯାଇ ପାଣିପାତ୍ରରେ ପହଞ୍ଚିଛନ୍ତି । ସେଠାରେ ଥିବା ପାଣି ଉପରେ ଗୁଡ଼ାଏ ପିମ୍ପୁଡ଼ି ପରସ୍ପରକୁ କାମୁଡ଼ି ଧରି ସେତୁବନ୍ଧ ଭଳି ରାସ୍ତା ତିଆରି କରିଛନ୍ତି । ସେମାନଙ୍କ ଉପରେ ପିମ୍ପୁଡ଼ି ଧାଡ଼ି ଚାଲି ଅନାୟାସରେ ପାଣି ପାର ହୋଇ ଟେବୁଲ ଉପରେ ଚଢ଼ିଛନ୍ତି ।

ଆମ୍ଭମାନଙ୍କ ଘରେ ମଧ୍ୟ ଚିନି ପ୍ରଭୃତି ଜିନିଷ ଜଳଯନ୍ତ୍ର ସାହାଯ୍ୟରେ ରଖାଯାଇଥାଏ; ତା ସତ୍ତ୍ୱେ ସେଥିରେ ପିମ୍ପୁଡ଼ି ଲାଗିଥିବାର ଦେଖାଯାଏ । ସାମାନ୍ୟ ଟିକିଏ ଛିଦ୍ର ପାଇଲେ ସେମାନେ ମନୁଷ୍ୟର ସବୁ ଉପାୟ ପଣ୍ଡ କରିଦିଅନ୍ତି । ଯେଉଁଠାରେ କିଛି ହେଲେ ବାଟ ନ ମିଳେ, ସେଠାରେ ଦଳେ ପିମ୍ପୁଡ଼ି ପାଣିରେ ପହଁରି ରହି ସେତୁବନ୍ଧ ବାନ୍ଧିଦିଅନ୍ତି—ସତେ ଯେପରି ଲଙ୍କାକୁ ଯିବା ପାଇଁ ବାନରମାନେ ବନ୍ଧ ବାନ୍ଧିଥିଲେ !

ସେହି ଜୀବନ୍ତ ବନ୍ଧଉପରେ ହଜାରହଜାର, ଲକ୍ଷଲକ୍ଷ ପିମ୍ପୁଡ଼ି ଘନଘନ ଯା ଆସ କରି ଖାଦ୍ୟପଦାର୍ଥ ସବୁ ନେଇଆସି ନିଜ ଭଣ୍ଡାରଘରେ ସାଇତି ରଖନ୍ତି ।

ପ୍ରଥମ ପିମ୍ପୁଡ଼ିଟି ଯେଉଁ ବାଟ ଦେଇ ଯିବ, ତା ପଛରେ ଦଳ ବାନ୍ଧି ସମସ୍ତେ ଠିକ୍ ସେହି ବାଟରେ ଚାଲିବେ । ସେହି ପିମ୍ପୁଡ଼ି ଧାର ମଝିରେ ଟିକିଏ କେରୋସିନ ଢାଳିଦେଲେ ବା ଅନ୍ୟ କୌଣସି ପ୍ରକାର ବାଧା ଦେଲେ ଦେଖାଯାଏ, ପଛଦଳର ପିମ୍ପୁଡ଼ି ବାଟ ଭାଙ୍ଗି ବୁଲିଯିବେ ଏବଂ ଆଗରେ ପୂର୍ବ ଦଳ ସହିତ ନିଶ୍ଚୟ ମିଶିଯିବେ । ଯଦି ନିତାନ୍ତ ଆଗକୁ ଯାଇ ନ ହେବ, ତେବେ ସେହିଠାରୁ ସେହିପରି ଦଳ ବାନ୍ଧି ପଛକୁ ଫେରି ଆସିବେ । ଅନ୍ୟ ସମୟରେ ବା ପର ଦିନ ସେହି ବାଟ ଦେଇ ଯାଇ ଆଗରୁ ଯାଇଥିବା ଦଳ ସହିତ ମିଶିବାକୁ ଚେଷ୍ଟା କରିବେ ।



[ ଯୁଦ୍ଧଯାତ୍ରା ]

## ପିମ୍ପୁଡ଼ିଙ୍କ ଦେହ

ପିମ୍ପୁଡ଼ିଙ୍କ ଦେହରେ ଛଅଟି ଗୋଡ଼ । ମୁହଁରେ ଦୁଇଟି ଶୁଣ୍ଢଥାଏ, ତାହା ହାତ ପରି କାମ କରେ । ଦେହ ତିନି ଭାଗରେ ବିଭକ୍ତ; ମୁଣ୍ଡ, ଗ୍ରୀବା ଓ ପଛପାଖ । ପଛପାଖ ସବୁଠାରୁ ବଡ଼ ଓ ମୋଟା । ଦେହ ତୁଳନାରେ ପାଟି ବଡ଼ ଓ ଧାରୁଆ । ସେ କାମୁଡ଼ିଦେଲେ ଆମକୁ କାଟେ, ଛୋଟ ଛୋଟ ପିଲାଙ୍କ ନରମ ଚମଡ଼ା ଖଣ୍ଡିଆ ହୋଇଯାଏ । ସମସ୍ତ ସମୟରେ ପିମ୍ପୁଡ଼ିଙ୍କ ଦେହରେ ତେଣା ଲାଗେ । ରାଣୀ ପିମ୍ପୁଡ଼ି ଦେହରେ ସବୁ ସମୟରେ ତେଣା ରହିଥାଏ ।

## ପିମ୍ପୁଡ଼ିଙ୍କ ରାଜ୍ୟ

ପଣ୍ଡିତମାନେ ପରୀକ୍ଷା କରି ଦେଖିଛନ୍ତି ଯେ, ପିମ୍ପୁଡ଼ିମାନଙ୍କର ବୁଦ୍ଧି ଯଥେଷ୍ଟ ବେଶି । ଯେଉଁ ଇଞ୍ଜିନିୟରିଂ କୌଶଳରେ ପିମ୍ପୁଡ଼ିଙ୍କ ଘର ତିଆରି ହୋଇଥାଏ, ତାହା ଯେ ଦେଖିବ, ସେ ନିଶ୍ଚୟ କହିବ, ମଣିଷଙ୍କ ଭିତରେ ଥିବା ବଡ଼ ବଡ଼ ଇଞ୍ଜିନିୟରଙ୍କ କୌଶଳଠାରୁ ସେମାନଙ୍କ କୌଶଳ ଅତି ବେଶି ।

ସେମାନଙ୍କ ଘରର ଦୁଆରମୁହଁ ଭୂଇଁଉପରେ ଥିବା ଟିକି ଗାତଟିଏ । ଅନେକ ସମୟରେ ସେଥିରେ ମାଟି ମଧ୍ଯ ଘୋଡ଼ାଇ ଦିଆଯାଇଥାଏ । ସେହି ଛୋଟ ଗାତ ଦେଖି କେହି କେବେ ବିଶ୍ବାସ କରିବ ନାହିଁ ଯେ, ତା ଭିତରେ ଗୋଟାଏ ଏଡ଼େ ବଡ଼ ରାଜ୍ୟ ରହିଛି ।

ସେ ରାଜ୍ୟରେ ନାନା ପ୍ରକାର ଘର । ଗୋଟିଏ ଘରର ଠିକ୍ ଭାଗମାପ ଅନୁସାରେ ଆଉ ଗୋଟିଏ ଘର । ଘରଭିତରକୁ

ଜମାରହେ, ସେମାନଙ୍କ ସମ୍ପତ୍ତି ବଢ଼େ । ଯେଉଁମାନେ ବନ୍ଦୀ ହୋଇ ଆସିଥାନ୍ତି, ସେମାନେ କ୍ରୀତଦାସରୂପେ ରହନ୍ତି । ଯୁଦ୍ଧ ଜିଣି ଆଣିଥିବା ଅଣ୍ଡାଗୁଡ଼ିକ ଫୁଟି ଛୁଆ ହେଲେ, ସେମାନେ ମଧ୍ୟ କ୍ରୀତଦାସ ହୁଅନ୍ତି । ରାଜ୍ୟର ସବୁ ଘର ସଫା ରଖିବା, ଅଧିକା ଗାତ ଖୋଳି ଘର ତିଆରି କରିବା, ଦଳ ପାଇଁ ସୈନ୍ୟଙ୍କ ସହିତ ମିଶି ଲଢ଼ିବା ଏହି କ୍ରୀତଦାସମାନଙ୍କର କାମ ।

## ଗାଈ

ମଣିଷ ଗାଈ ରଖି ଦୁଧ ଖାଏ । ପିମ୍ପୁଡ଼ି ମଧ୍ୟ ଗାଈ ରଖନ୍ତି । ଗୋଟିଏ ମାଉଁସିଆ ଛୋଟ ପୋକ ସାଧାରଣତଃ ସନ୍ତସନ୍ତିଆ ସ୍ଥାନରେ ଗଛମୂଳ ଚେରରେ ଲାଗିଥାଆନ୍ତି । ଏମାନଙ୍କ ଆକାର ମଣ୍ଡାକାଇଁଚ ପରି ଗୋଲ । ଛଅଟି ଗୋଡ଼ ଓ ଟିକି ମୁହଁଟିଏ । ଏ ପୋକର ପେଟ ଚିପିଲେ ଅଠାଳିଆ ରସ ବାହାରେ । ଏହି ପୋକ ପିମ୍ପୁଡ଼ିମାନଙ୍କ ଗାଈ ଓ ତା ଦେହର ରସ ଦୁଧ । ଶ୍ରମିକ ପିମ୍ପୁଡ଼ିସବୁ ଗଛମୂଳ ଖୋଜି ଏ ପୋକ ସଂଗ୍ରହ କରନ୍ତି ଓ ମୁହଁରେ କାମୁଡ଼ି ନିଜ ରାଜ୍ୟକୁ ନେଇ ଆସନ୍ତି । ଗାତରେ ସେମାନଙ୍କ ପାଇଁ ତିଆରି ହୋଇଥିବା ସ୍ୱତନ୍ତ୍ର ଘରର ଉପରେ ସ୍ତରରେ ପୋକଗୁଡ଼ିକ ଓହଳ ଲାଗି ରହିଥାଆନ୍ତି । ଯେତେବେଳେ ଦରକାର ପଡ଼େ, ପିମ୍ପୁଡ଼ିମାନେ ଏହି ପୋକର ପେଟ କାମୁଡ଼ିଦିଅନ୍ତି; ସେଥିରୁ ଯେଉଁ ରସ ବାହାରେ ତାହା ଖାଆନ୍ତି । ଅନ୍ୟ ଖାଦ୍ୟଭିତରେ ଏହା ସେମାନଙ୍କର ଅତି ପ୍ରିୟ ଖାଦ୍ୟ—ଠିକ୍ ଆମର ଯେପରି ଗାଈଦୁଧ ।

ଆମେ ଆମମାନଙ୍କ ଗାଈକୁ ଘାସପଡ଼ିଆରେ ଚରାଉଁ ବା ବିଲରୁ ଘାସ କାଟିନେଇ ତାକୁ ଖାଇବାକୁ ଦେଉଁ । ପିମ୍ପୁଡ଼ିମାନେ

ଏହି ପୋକକୁ ମୁହଁରେ ଧରି ସମସ୍ତ ସମୟରେ ଉପରକୁ ଆଣନ୍ତି ଓ ଗଛର କଅଁଳିଆ ପତ୍ର ବା ଚେରପାଖରେ ଛାଡ଼ିଦିଅନ୍ତି । ଏହି ପତ୍ର ଓ ଚେର ସେମାନଙ୍କ ଖାଦ୍ୟ । ସେମାନେ ପେଟେ ପେଟେ ଖାଇସାରିଲେ ପୁଣି ମୁହଁରେ କାମୁଡ଼ି ଧରି ଗୃହାଳଘରକୁ ନେଇ ଯାଆନ୍ତି ।

ଅନେକ ସମୟରେ ଉପରୁ କଅଁଳିଆ ପତ୍ର, ସରୁ ଚେର ଆଦି ନେଇ ସେହି ଗୃହାଳଘରେ ଜମା କରନ୍ତି । ପୋକଗୁଡ଼ିକ ତାହା ଖାଇ ବଞ୍ଚିରହନ୍ତି ।

## ରାଜ୍ୟଶାସନ

ପିମ୍ପୁଡ଼ିରାଜ୍ୟରେ ରାଣୀ ସର୍ବେସର୍ବା—ସ୍ୱାଧୀନ ଗଣତନ୍ତ୍ର ରାଷ୍ଟ୍ରର ରାଷ୍ଟ୍ରପତି । କେବଳ ଅଣ୍ଡା ଦେବା ତାର କାମ । ଦଳ ଭିତରେ ସେହି ଗୋଟିଏ ମାତ୍ର ରାଣୀ ଥାଏ । ସେ କେବେ ନିଜ ଘର ଛାଡ଼ି ବାହାରକୁ ଯାଏ ନାହିଁ । ତାର ଖାସ୍ କାମରା ଚାକରମାନେ ଭଣ୍ଡାରରୁ ଖାଦ୍ୟ ଆଣି ତାକୁ ଖୁଆଇଦିଅନ୍ତି ।


( ରାଣୀ ପିମ୍ପୁଡ଼ି )

ରାଣୀର ଅତି ବିଶ୍ୱାସୀ ଓ ବଳୁଆ ପିମ୍ପୁଡ଼ିମାନେ ବିଭିନ୍ନ ବିଭାଗର ମନ୍ତ୍ରୀ ପଦରେ ରହିଥାନ୍ତି । ଦଳଭିତରେ କେହି କିଛି ଦୋଷ କଲେ ବା କୌଣସି ନୀତିବାହାର କାମ କଲେ, ତାକୁ ଏହି ମନ୍ତ୍ରୀମାନେ ଦଣ୍ଡ ଦିଅନ୍ତି । ସୈନ୍ୟମାନଙ୍କୁ ମଧ୍ୟ ଯୁଦ୍ଧ କରିବାକୁ ଏହିମାନେ ପଠାନ୍ତି । ଗୋଟିଏ ଗୋଟିଏ ଦଳରେ ଜଣେ ଜଣେ ସେନାପତି ହୋଇ ଯାଇ ଯୁଦ୍ଧ କରନ୍ତି । ନର୍ସଗୁଡ଼ିକ ରାତିଦିନ ଡିମ୍ବ

ଓ ଛୁଆଙ୍କ ସେବାରେ ଲାଗିଥାଆନ୍ତି । ପିମ୍ପୁଡ଼ିରାଜ୍ୟର ଆଇନକାନୁନ ଏଭଳି ଭାବରେ ଗଢ଼ା ଯେ, କେହି ତା କର୍ତ୍ତବ୍ୟରେ ଟିକଏ ହେଲେ ହେଳା କରେ ନାହିଁ । ନିଜ ସୁଖ ସୁବିଧାକୁ ନ ଚାହିଁ ସମସ୍ତେ ଦଳର ବା ରାଜ୍ୟର ସୁଖ ସୁବିଧା ପାଇଁ ସବୁବେଳେ କାମ କରୁଥାଆନ୍ତି । ଅବଶ୍ୟ ସେଥିପାଇଁ କୌଣସି ଆଇନ ବହି ନାହିଁକି ବି କାହାକୁ ଆଇନ କାନୁନ ଶିକ୍ଷା ଦିଆଯାଏ ନାହିଁ । ଆଇନ ମାନି ଚଳିବା ପାଇଁ ସେମାନେ ଜନ୍ମରୁ ଶିଖିଥାଆନ୍ତି ।

ଶତ୍ରୁ ଆକ୍ରମଣ କଲେ, ପ୍ରଥମେ ରାଜ୍ୟର ସୈନ୍ୟମାନେ ସେମାନଙ୍କ ଅଣ୍ଡା ଓ ଖାଦ୍ୟଭଣ୍ଡାର ଯଥାସାଧ୍ୟ ଲୁଚାଇ ରଖିବାକୁ ଚେଷ୍ଟା କରନ୍ତି । ତା ପରେ ସମସ୍ତେ ଆସି ଯୁଦ୍ଧ କରନ୍ତି । ଯୁଦ୍ଧରେ ମରି ବା ବନ୍ଦୀ ହୋଇ ଗଲା ପରେ ଆଉ ଯେତେକ ରହିଯାଆନ୍ତି, ସେମାନେ ପୁଣି ଛାରଖାର ହୋଇଥିବା ନିଜ ରାଜ୍ୟକୁ ସଜାଡ଼ନ୍ତି । ଲୁଚାଇ ରଖିଥିବା ଖାଦ୍ୟଦ୍ରବ୍ୟ ଆଣନ୍ତି, ଅଣ୍ଡା ଛୁଆଙ୍କ ସେବା ଯତ୍ନ କରି ବଂଶ ବଢ଼ାନ୍ତି । କୌଣସି ରାଜ୍ୟର ରାଣୀ ଉପରେ ଶତ୍ରୁଦଳ ଆକ୍ରମଣ କରନ୍ତି ନାହିଁ । ଖାଦ୍ୟପଦାର୍ଥ, ଗାଈ ଓ ଅଣ୍ଡାଛୁଆ ନେବାହିଁ ସେମାନଙ୍କର ପ୍ରଧାନ ଲକ୍ଷ୍ୟ ଥାଏ ।

## ପିମ୍ପୁଡ଼ିମାନଙ୍କ ଅତିଥିସତ୍କାର

ପିମ୍ପୁଡ଼ି ରାଜ୍ୟକୁ ଅନେକ ସମୟରେ ବାହାର ରାଜ୍ୟରୁ ପିମ୍ପୁଡ଼ି-ଅତିଥି ଆସନ୍ତି । ଅଭାବ ସମୟରେ ଖାଦ୍ୟ ଖାଇବା ପାଇଁ ବିଶେଷତଃ ଗାଈ ଦୁଧ ଲାଗି ସେମାନେ ଆସିଥାଆନ୍ତି । କେତେକ ଦିନ ସେଠାରେ ସୁଖରେ ରହନ୍ତି, ତା ପରେ ନିଜ ରାଜ୍ୟ ବା ଦଳ

ମଧ୍ୟକୁ ଗୁଳିଯାଆନ୍ତି । କେତେକ ମଧ୍ୟ ଆଉ ଜମା ଯାଆନ୍ତି ନାହିଁ । ରାଜ୍ୟର ପିମ୍ପୁଡ଼ିମାନେ ଏହି ଅତିଥିମାନଙ୍କର ଖୁବ୍ ଯତ୍ନ ନିଅନ୍ତି; ସେମାନଙ୍କ ଇଚ୍ଛା ମୁତାବକ ଖାଦ୍ୟ ଓ ଦୁଧ ଯୋଗାନ୍ତି ।

ଆଉ ମଧ୍ୟ ଜଣାଯାଇଛି, ଏହି ଅତିଥିରୂପରେ ଅନ୍ୟ ରାଜ୍ୟର ଗୁପ୍ତଚର ବା 'ପଞ୍ଚମ ବାହିନୀ' ମଧ୍ୟ ଅନେକ ସମୟରେ ଆସିଥାଆନ୍ତି । ସେ ରାଜ୍ୟ ଭଣ୍ଡାରରେ ଖାଦ୍ୟଦ୍ରବ୍ୟ କେତେ ଅଛି, ଗାଈ କେତେ ଅଛନ୍ତି, ସୈନ୍ୟସଂଖ୍ୟା କେତେ—ଏହି ସବୁ ଖବର ସେମାନେ ବୁଝି ନିଜ ରାଜ୍ୟକୁ ଫେରି ଯାଆନ୍ତି । ନିଜ ଦଳର ପିମ୍ପୁଡ଼ିମାନଙ୍କୁ ଏ ରାଜ୍ୟଉପରେ ଚଢ଼ାଉ କରିବା ପାଇଁ ଡାକି ଆଣନ୍ତି । ଏହି ଗୁପ୍ତଚର ଯେଉଁଠାରେ ଅତିଥି ହୋଇ ରହିଥାଏ, ସେ ରାଜ୍ୟର କେହି ତାହା ଜାଣିପାରିଲେ, ସୈନ୍ୟମାନଙ୍କୁ ଖବର ଦିଏ; ସୈନ୍ୟମାନେ ଆସି ତାକୁ କାମୁଡ଼ି ମାରିପକାନ୍ତି ।

## ଭବିଷ୍ୟତ ଜ୍ଞାନ

ପିମ୍ପୁଡ଼ିମାନଙ୍କର ଭବିଷ୍ୟତ ଜ୍ଞାନ ଅତି ବେଶି । ବର୍ଷା ହେବ କି ନାହିଁ, ସେ କଥା ଆଗରୁ ଜାଣିବା ପାଇଁ ଆଜିକାଲି ବଡ଼ବଡ଼ ସହରରେ ପାଣିପାଗ ଅଫିସ ଖୋଲା ଯାଇଛି । ସେମାନେ ବହୁ ଯନ୍ତ୍ରପାତି ସାହାଯ୍ୟରେ ପରୀକ୍ଷା କରି ଆସନ୍ତା ଛତିଶ ଘଣ୍ଟା ଭିତରେ ବର୍ଷା ହେବ କି ନାହିଁ, ତାହା ଘୋଷଣା କରନ୍ତି । ସେଥିରୁ କେତେକ ସତ ହୁଏ, କେତେକ ହୁଏ ନାହିଁ । ମାତ୍ର ଆମେ ଯେତେବେଳେ ଦେଖୁ ଯେ, ପିମ୍ପୁଡ଼ିଧାର ମୁହଁରେ ଧଳା ଅଣ୍ଡା ଧରି ରାତି ସମୟରେ ପୁରୀକୁ ଯାଚୀ ଗୁଳିଲାଭଳି ଧାଡ଼ି ବାନ୍ଧି ଗୁଳିଛନ୍ତି, ସେତେବେଳେ ଜାଣିପାରୁ ଯେ, ଆସନ୍ତା କେତେ ଘଣ୍ଟା ପରେ ନିଶ୍ଚୟ ବର୍ଷା ହେବ ।

ତାହାଙ୍କୁ ଠିକ୍ ହୋଇଥାଏ । ବର୍ଷା ହେବାର ସୂଚନା ପିମ୍ପୁଡ଼ିମାନେ କିପରି ଆଗରୁ ପାଆନ୍ତି; ତାହା ଜାଣିବା ସହଜ ନୁହେଁ ।

ଯଦି କୌଣସି ଦଳ ଖାଲୁଆ ଜାଗାରେ ନିଜ ରାଜ୍ୟ ବିସ୍ତାର କରିଥାନ୍ତି, ବର୍ଷା ହେଲେ ସେଥିରେ ପାଣି ପଶିଯିବ ବୋଲି ସେମାନେ ଜାଣି ପାରନ୍ତି । ତେଣୁ ବର୍ଷା ପୂର୍ବରୁ ଅଣ୍ଡା ଛୁଆ ଧରି ସେ ସ୍ଥାନ ଛାଡ଼ି ଉଚ୍ଚ ଶୁଖିଲା ସ୍ଥାନକୁ ଚାଲିଯାଆନ୍ତି । ଆମର 'ଗ୍ରୀଷ୍ମନିବାସ ଓ 'ଶୀତନିବାସ' ସ୍ୱତନ୍ତ୍ର ଥିଲା ପରି ସେମାନଙ୍କର ଖରାଦିନ ରାଜ୍ୟ ଓ ବର୍ଷାଦିନ ରାଜ୍ୟ ସ୍ୱତନ୍ତ୍ର ଭାବରେ ଆଗରୁ ତିଆରି ହୋଇଥାଏ ।

କେହି କେହି କହନ୍ତି; ପିମ୍ପୁଡ଼ିମାନେ ଯେ କେବଳ ଆଜିକାଲି ଏତେ ଦୂର ଶିକ୍ଷିତ ଓ ସଭ୍ୟ ହୋଇଛନ୍ତି, ତା ନୁହେଁ; ଲକ୍ଷଲକ୍ଷ ବର୍ଷ ତଳେ ବି ସେମାନେ ଏହିପରି ବୁଦ୍ଧିଆ ଥିଲେ । ତାଙ୍କ ତୁଳନାରେ ମନୁଷ୍ୟ ଏବେ ଅତି ଅଳ୍ପ ଦିନ ହେଲା ଶିକ୍ଷିତ ହେବାକୁ ଉଦ୍ୟମ କରୁଛି ।

ପିମ୍ପୁଡ଼ିମାନଙ୍କ ବିଷୟରେ ସବୁ କଥା ଜାଣିବା ପାଇଁ ଗୋଟିଏ ସୁନ୍ଦର ଉପାୟ ଅଛି । ଗୋଟିଏ ବଡ଼ କାଚବୋତଲ ବା 'ଜାର'ର ଅଧେ ଅଂଶ ହୁଙ୍କା ବା ହାଲୁକା ମାଟିରେ ପୂରଣ କରିଦେବ । କାଚବୋତଲ ବାହାର ପାଖରେ ଗୋଟିଏ କଳା କାଗଜ ଏଭଳିଭାବରେ ଗୁଡ଼ାଇଦେବ, ଯେପରି କି ଭିତରେ ଥିବା ମାଟି ପଦାକୁ ଦେଖାଯିବ ନାହିଁ । ସେହି ମାଟିରେ ଗୋଟିଏ ରାଣୀ ପିମ୍ପୁଡ଼ି ସହିତ କେତେଗୁଡିଏ ପିମ୍ପୁଡ଼ି ଆଣି ଛାଡ଼ିଦେବ ଓ ତାହା ମୁହଁ ଘୋଡ଼ାଇ ରଖିବ । ଘୋଡ଼ଣୀରେ ପବନ ଯାଆସ ପାଇଁ ସୂକ୍ଷ୍ମ

ସ୍ଥୋଟ କଣା କରିଥିବ । ପ୍ରତିଦିନ କିଛି କିଛି ଖାଦ୍ୟପଦାର୍ଥ ବୋତଲରେ ପକାଇବ ଓ ଅଳ୍ପ ଅଳ୍ପ ପାଣି ଛିଞ୍ଚିବ । କେତେ ଦିନ ପରେ ବୋତଲ ବାହାର ପାଖରେ ଲାଗିଥିବା କଳା କାଗଜ ଖଣ୍ଡିକ କାଢ଼ିଦେଲେ, ବୋତଲ ଭିତରେ ଥିବା ମାଟିରେ କିପରି ଘରସବୁ ତିଆରି ହୋଇଛି, ପିମ୍ପୁଡ଼ିମାନେ କିପରି ଚଳପ୍ରଚଳ ହେଉଛନ୍ତି, ତାହା ଦେଖିପାରିବ ।

---

# ବଡ଼ ଇଞ୍ଜିନିୟର—ଉଇ

ପିଲାଦିନୁ ଆମେ ପଢ଼ିଥାଇଁ, 'କ୍ଷୁଦ୍ରକୀଟ ଉଇ ଅଳ୍ପଅଳ୍ପ କରି ରଚଇ ବଲ୍ମୀକ ଘର' । ଉଇ ସିନା ଦେଖିବାକୁ ଅତି ସାନ; ମାତ୍ର ତା ପରି ବୁଦ୍ଧିଆ ଇଞ୍ଜିନିୟର ବୋଧହୁଏ ମଣିଷଙ୍କୁ ଛାଡ଼ିଦେଲେ ଆଉ କେହି ନାହାନ୍ତି ।

ଉଇଙ୍କୁ ପିମ୍ପୁଡ଼ି ଶ୍ରେଣୀରେ ସାଧାରଣତଃ ଗଣାଯାଇଥାଏ; କିନ୍ତୁ ଏମାନେ ପିମ୍ପୁଡ଼ିଙ୍କଠାରୁ ସ୍ୱତନ୍ତ୍ର ପ୍ରାଣୀ । ପିମ୍ପୁଡ଼ିଙ୍କ ପରି ଏମାନଙ୍କର ଛଅଟି ଗୋଡ଼, ଦୁଇଟା ହାତ ଓ ଶରୀର ତିନି ଭାଗରେ ବିଭକ୍ତ । ଏମାନଙ୍କ ଦେହ ଅତି ନରମ । ପିମ୍ପୁଡ଼ି ଓ ଜନ୍ଦାସବୁ ଏମାନଙ୍କୁ ଦେଖିଲେ ଖାଇପକାନ୍ତି ।

## ଉଇଙ୍କ ଉପଦ୍ରବ

ଉଇ ଆମର ବହିପତ୍ର, ଲୁଗାପଟା ଇତ୍ୟାଦି ନିତାନ୍ତ ଦରକାରୀ ଓ ବହୁମୂଲ୍ୟ ଜିନିଷ ଖାଇଯାଆନ୍ତି, ନଷ୍ଟ କରିପକାନ୍ତି । ତେଣୁ ସେମାନଙ୍କ ଉପରେ ଆମେ ଭାରି ଚିଡ଼ୁ; ସେମାନଙ୍କୁ ମାରିବା ପାଇଁ ନାନା ଉପାୟ କରୁ । କିନ୍ତୁ ଯେତେ ମାଇଲେ ବି ସେମାନଙ୍କ ବଂଶ ଲୋପ କରିବା କଦାପି ସମ୍ଭବ ହୁଏ ନାହିଁ ।

ଲୁହା, ସୁନା, କଂସା ପ୍ରଭୃତି ଧାତୁଦ୍ରବ୍ୟ ଛାଡ଼ିଦେଲେ ଆଉ ଯାହା କିଛି ପାଆନ୍ତି, ଉଇମାନେ ତାହା ଖାଇଯାଆନ୍ତି । ଘରେ ଲାଗିଥିବା ବଡ଼ବଡ଼ କାଠର କଡ଼ି ବରଗା ବା ଅନ୍ୟାନ୍ୟ କାଠ ତିଆରି ଜିନିଷ ଅଳ୍ପ ସମୟ ମଧ୍ୟରେ ଏହି ଉଇଙ୍କ ଯୋଗେ ଅକର୍ମଣ୍ୟ ହୋଇଯାଏ । ପ୍ରଥମେ ଏମାନେ ଅଳ୍ପ ସଂଖ୍ୟାରେ ଆସି ଭିତରେ ଭିତରେ ଜିନିଷକୁ ଖାଇବାକୁ ଆରମ୍ଭ କରନ୍ତି । ସେତେବେଳେ ଯେତେ ସାବଧାନ ହେଲେ ମଧ୍ୟ ଆଖିକୁ ତାହା ଦେଖାଯାଏ ନାହିଁ । ପରେ ଉଇ ଲାଗିବାର ଯେତେବେଳେ ଜଣାପଡ଼େ; ସେତେବେଳକୁ ଜିନିଷଗୁଡ଼ିକର ଭିତର ପୋଲା ହୋଇଯାଇଥାଏ ।

## ବାସସ୍ଥାନ

ପୃଥିବୀର ଗ୍ରୀଷ୍ମମଣ୍ଡଳ ଅଞ୍ଚଳ ଉଇଙ୍କର ବାସସ୍ଥାନ । ଏସିଆ, ଆଫ୍ରିକା, ଆମେରିକା, ଅଷ୍ଟ୍ରେଲିଆ ମହାଦେଶରେ ଗରମ ସ୍ଥାନମାନଙ୍କରେ ଏମାନେ ଦେଖାଯାନ୍ତି । ଗାଁ ବା ସହରରେ ଥିବା ଘର, ବଣଜଙ୍ଗଲ, ଏପରି କି ମରୁଭୂମିରେ ମଧ୍ୟ ଏମାନେ ରହନ୍ତି ଓ ନିଜ ରାଜ୍ୟ ବିସ୍ତାର କରିଥାଆନ୍ତି । କେତେ ଲକ୍ଷ ବର୍ଷ ହେଲା ଯେ ଉଇ ଜାତି ପୃଥିବୀରେ ରହିଆସିଛନ୍ତି, ତାର ହିସାବ ଏପର୍ଯ୍ୟନ୍ତ କେହି କରିପାରିନାହାନ୍ତି ।

ଉଇମାନଙ୍କ ପେଟରେ ଏକପ୍ରକାର ଅଠାଳିଆ ରସ ଥାଏ । ସେ କୌଣସି ଦ୍ରବ୍ୟ କାମୁଡ଼ିଲେ ପାଟି ବାଟେ ସେହି ରସ ଠିକ୍ ଆମ ପାଟିର ଛେପଭଳି ଆସି ଜିନିଷରେ ଲାଗିଯାଏ । ଉଇ କାମୁଡ଼ିଥିବା ଦ୍ରବ୍ୟ ଓଦା ଓ ନରମ ହୋଇଯାଏ; ତେଣୁ ସେମାନଙ୍କର ଖାଇବାକୁ ସୁବିଧା ହୁଏ ।

# ରାଣୀଉଇ

ଉଇରାଜ୍ୟରେ ପ୍ରଧାନତଃ ତିନି ଜାତିର ଉଇ ଦେଖା ଯାଆନ୍ତି । ରାଣୀଉଇ, ଶ୍ରମିକ ବା କୃଷୀ ଉଇ ଓ ଅଳସୁଆ ବା ପୁରୁଷ ଉଇ । ରାଣୀ ଉଇ ରାଜ୍ୟର ସର୍ବେସର୍ବା । ସେ କିଛି କାମ କରେନାହିଁ; ସବୁବେଳେ ଅଣ୍ଡା ଦେଉଥାଏ, ବଂଶ ବଢ଼ାଇବାରେ ଲାଗିଥାଏ । ହିସାବ କରାଯାଇଛି ଯେ, ଗୋଟିଏ ରାଣୀ ଦିନକୁ ତିରିଶ ହଜାର ଲେଖାଏଁ ଅଣ୍ଡା ଦିଏ । ପୁଣି ଦିନେ ଦୁଇଦିନ ନୁହେଁ, ମାସମାସ ଧରି ସେ ଏହିପରି ଅଣ୍ଡା ଦେଉଥାଏ । ଅଣ୍ଡା ଦେବା କାମରେ ସେ ଏତେ ବ୍ୟସ୍ତ ଥାଏ ଯେ, ନିଜ ଘରେ ଚୁଲିଡ଼ ଆଉ କୁଆଡ଼କୁ ତ ଯାଇପାରେ ନାହିଁ ଏପରିକି କି ନିଜେ ଖାଇବାକୁ ବି ସମୟ


( ରାଣୀ ଉଇ )

ପାଏ ନାହିଁ । ତା ଚାରିପାଖରେ ଘେରି ରହିଥିବା ଚାକରମାନେ ଖାଦ୍ୟଦ୍ରବ୍ୟ ଆଣି ତା ପାଟିରେ ଗୁଞ୍ଜି ଦିଅନ୍ତି । କେତେକ ରାଣୀଙ୍କ ଦେହରେ ଚାରିଗୋଟି ଲେଖାଏଁ ଡେଣା ଥାଏ, କାହାର କାହାର ନ ଥାଏ ।

ଗୋଟିଏ ଗୋଟିଏ ଦଳରେ ଲକ୍ଷଲକ୍ଷ ଏପରିକି କୋଟି କୋଟି ସଂଖ୍ୟାରେ ଉଇ ରହିଥାଆନ୍ତି । ସେମାନେ ଶୃଙ୍ଖଳାର ସହିତ ନିଜ ନିଜ କାମ ସୁରୁଖୁରୁରେ ସବୁବେଳେ କରିବାରେ ଲାଗିଥାଆନ୍ତି । ଯାହାର ଯେଉଁ କାମ, ସେ କାମ କରିବାରେ ସେ ଟିକିଏ ହେଲେ ଅବହେଳା କରେ ନାହିଁ କି କାହାରି ଆଦେଶକୁ ଚାହିଁ ରହେ ନାହିଁ । ନିଜ କର୍ତ୍ତବ୍ୟରେ ଅବହେଳା କରିବା, କାମରେ ଠକାଇଦେବା ପ୍ରବୃତ୍ତି ବୋଧହୁଏ ଅତି ସଭ୍ୟ ଓ ଶିକ୍ଷିତ ବୋଲଉ-ଥିବା ମନୁଷ୍ୟ ବ୍ୟତୀତ ଆଉ କୌଣସି ପ୍ରାଣୀଠାରେ ଦେଖାଯାଏ

ନାହିଁ । ଉଇ ମନୁଷ୍ୟପରି ସଭ୍ୟ ଓ ଶିକ୍ଷିତ ହେଲେ ଭବିଷ୍ୟତରେ କଅଣ ହେବ କୁହାଯାଇପାରୁ ନାହିଁ; ମାତ୍ର ଏପର୍ଯ୍ୟନ୍ତ ସେମାନଙ୍କ କାର୍ଯ୍ୟ ସୁନ୍ଦରରୂପେ ଚାଲିଛି ।

ଉଇରାଜ୍ୟରେ ରାଣୀ ତଳକୁ ପ୍ରଧାନ ହେଉଛନ୍ତି ଶ୍ରମିକ-ଉଇ । ଏମାନଙ୍କ ସଂଖ୍ୟା ଅତି ବେଶୀ । ଏମାନେ ରାଜ୍ୟର ବିଶ୍ୱାସୀ ପ୍ରଜା, ଖୁବ୍ ପରିଶ୍ରମୀ । ନିଜ ରାଜ୍ୟର, ନିଜ ଜାତିର ଉନ୍ନତି ପାଇଁ ସବୁ ସମୟରେ ଏମାନେ କାମରେ ଲାଗିଥାଆନ୍ତି । ପୁଣି କାମ କରିବାଲାଗି 'ଜାତିବିଭାଗ' ମଧ୍ୟ ସେମାନଙ୍କ ଭିତରେ ହୋଇଛି । ଦଳେ ବାହାରକୁ ଆସି ଖାଦ୍ୟ ପଦାର୍ଥ ସଂଗ୍ରହ କରନ୍ତି;



( ଶ୍ରମିକ ଉଇ )

ଦରକାର ପଡ଼ିଲେ ଅନ୍ୟ କୀଟମାନଙ୍କ ସହିତ ଲଢ଼େଇ କରନ୍ତି— ଏମାନେ ସୈନ୍ୟସଂଗ୍ରହ ।

ରାଜ୍ୟଭିତରେ ଆଉ ଦଳେ ଶ୍ରମିକ ଥାଆନ୍ତି, ସେମାନେ ଚାଷୀ । ସ୍ଥାନେସ୍ଥାନେ ବଗିଚା କରି ଖାଦ୍ୟପଦାର୍ଥ ଉତ୍ପାଦନ କରାଇବା ସେମାନଙ୍କର ସବୁ ସମୟର କାମ ।

ଉଇମାନଙ୍କର ପ୍ରଧାନ ଖାଦ୍ୟ ଛତୁ । ବର୍ଷାଦିନେ ଉଇହୁଙ୍କା, ଘାସପଡିଆ ପ୍ରଭୃତିରେ ଗ୍ଲେଟଗ୍ଲେଟ, ନରମ ଓ ଧଳା ଛତୁ ଗଛ ବହୁତ ଉଠିଥାଏ । ଆମ୍ଭେମାନେ ତାକୁ ତୋଳିଆଣି ତରକାରି କରୁ । ଆମେ ଜାଣୁ, ସବୁ ଗଛର ମଞ୍ଜି ଅଛି, ଛତୁ ଗଛର ମଞ୍ଜି ନାହିଁ । ଏହି ଛତୁ ଉଇମାନଙ୍କ ଯୋଗେ ହିଁ ହୋଇଥାଏ । ଉଇ-ହୁଙ୍କାରେ ଏହା ବେଶି ପରିମାଣରେ ଦେଖାଯାଏ ।

ଉଇମାନେ ଏଣ୍ଟ ଛତୁ ଚୃଷ କରନ୍ତି କହିଲେ ଚଳେ । ଛତୁ ଗଛ ପାଇଁ ପାଣି ନିତାନ୍ତ ଦରକାର । ତେଣୁ ବର୍ଷାଦିନେ ହିଁ ଛତୁ ଉଠିଥାଏ । ଉଇହୁଙ୍କା ବା ଉଇମାନଙ୍କ ରାଜ୍ୟର ପ୍ରଧାନ ଅଂଶ ହେଉଛି ପାଣିର କେନାଲ । ନିତାନ୍ତ ଶୁଖିଲା ସ୍ଥାନ; ଏପରିକି ସ୍ଥାନେସ୍ଥାନେ





( ଉଇହୁଙ୍କାରେ କେନାଲ ବ୍ୟବସ୍ଥା ଓ ଛତୁ ଚୃଷ )

ମରୁଭୂମିରେ ମଧ୍ୟ ଖୁବ୍ ଗଭୀର ତଳୁ ଉଇମାନେ ଏ ପାଣି ସଂଗ୍ରହ କରିଥାନ୍ତି । ଆଫ୍ରିକାର ଗୋଟିଏ ଉଇହୁଙ୍କା ଖୋଳି ଦେଖା ଯାଇଛି ଯେ, ସେଠାରେ

ମାଟିର ଚଟସ୍ତମ୍ଭ ଫୁଟି ତଳେ ପାଣି ଅଛି ଏବଂ ସେଠାରୁ କେନାଲ କରି ଉଇମାନେ ନିଜ ରାଜ୍ୟକୁ ପାଣି ଆଣିବାର ବ୍ୟବସ୍ଥା କରିଛନ୍ତି ।

ଏହି କେନାଲର ବାଙ୍କ ଜାଗାମାନଙ୍କରେ ଛତୁ ଚୃଷ ହୋଇଥାଏ । ରାଜ୍ୟର ଗୋଟିଏ ଦଳ ଶ୍ରମିକ ଉଇ ଏ କାମରେ ସବୁ ସମୟରେ ବ୍ୟସ୍ତ ଥାଆନ୍ତି । ସେମାନେ ଚୃଷୀ ଉଇ । ରାଜ୍ୟର ସବୁ ଉଇଙ୍କୁ ଫସଲ ଉତ୍ପାଦନ କରି ଖାଇବାକୁ ଦେବା ସେମାନଙ୍କର ଏକମାତ୍ର କାମ । ମନୁଷ୍ୟ ଏବେ କୋଠଚୃଷର ଯୋଜନା କରୁଛି; ମାତ୍ର ଉଇ ରାଜ୍ୟରେ କୋଠଚୃଷ ପ୍ରଥା କେତେ ଲକ୍ଷ ବର୍ଷ ତଳୁ ଯେ ଚୃଲି ଆସୁଛି, ତାହା କେହି ହିସାବ କରି କହିପାରିବେ ନାହିଁ ।

ଉଇହୁଙ୍କା ଖୋଳିଲେ ତା ଭିତରୁ ଅନେକଗୁଡ଼ିଏ 'ଉଇଟାଙ୍କୁ' ବାହାରେ । ଏହାହିଁ ଛତୁବୃକ୍ଷର ମଞ୍ଜି ଓ ସାର । ଆଉ କେତେକ ଟାଙ୍କୁରେ ଉଇଡିମ୍ବ ପୂରି ରହିଥାଏ । ତାହା 'ଶିଶୁମଙ୍ଗଳ କେନ୍ଦ୍ର'ର ଟାଙ୍କୁ । ସେଠାରେ ଡିମ୍ବଗୁଡ଼ିକ ନିରାପଦରେ ରଖାଯାଇ ଥାଏ; ସେହିଠାରେ ହିଁ ସେମାନଙ୍କ ଯତ୍ନ ନିଆଯାଏ ।

ଉଇରାଜ୍ୟରେ ଦଳେ ସେବକ ବି ଅଛନ୍ତି । ସେମାନେ ଡିମ୍ବଯାକ ଆଣି ଶିଶୁମଙ୍ଗଳ କେନ୍ଦ୍ରରେ ସଜାଡ଼ି ରଖିଦିଅନ୍ତି । ସେମାନଙ୍କ ଯତ୍ନ ନେବା ଓ ସେଥିରୁ ପିଲି ବାହାର କରିବା କାମ ମଧ୍ୟ ସେବକମାନଙ୍କର । ଘରସବୁ ସଫା ରଖିବା ପାଇଁ ମଧ୍ୟ ଆଉ ଦଳେ ଚାକର ଥାଆନ୍ତି ।

ଉଇରାଜ୍ୟରେ ଶ୍ରମିକ ବା ସୈନ୍ୟପଉଜଙ୍କ ସଂଖ୍ୟା ବେଶି ଓ ସେମାନେ ଅନ୍ୟଙ୍କଠାରୁ ବଳୁଆ । ସେମାନଙ୍କ ପାଟି ଟିକିଏ ବଡ଼

ଏବଂ ଅଁାଶ । ହୁଙ୍କା ତିଆରି କରିବା, ବାହାରକୁ ଯାଇ ଖାଦ୍ୟପଦାର୍ଥ, ଘରକରଣା ଜିନିଷ ପ୍ରଭୃତି ସଂଗ୍ରହ କରି ଆଣିବା, ଶତ୍ରୁ ସହିତ ଲଢ଼ି ନିଜ ରାଜ୍ୟକୁ ନିରାପଦ ରଖିବା ସେମାନଙ୍କର କାମ ।

ଆଫ୍ରିକାରେ ଏତେ ବଡ଼ବଡ଼ ଉଇହୁଙ୍କାସବୁ ଅଛି ଯେ, ଆମେ ଦେଖିଲେ ହଠାତ୍ ଗୋଟାଏ ମୁଣ୍ଡିଆ ପାହାଡ଼ ବୋଲି କହିବା । ମାଟି ଉପରୁ ଗୋଟିଏ ଗୋଟିଏ ହୁଙ୍କା କୋଡ଼ିଏ, ପଚାଶ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୋଇଥାଏ । ମାଟିତଳେ ମଧ୍ୟ ପଚିଶ ଷାଠିଏ ଫୁଟ ପର୍ଯ୍ୟନ୍ତ ତାହା ଲମ୍ବିଥାଏ ।



[ ପଚାଶଫୁଟ ଉଚ୍ଚରେ ଗୋଟିଏ ହୁଙ୍କା ]

ଗୋଟିଏ ହୁଙ୍କା ଭଲ ରୂପେ ନିରୀକ୍ଷଣ କଲେ ଆମେ ବୁଝି ପାରିବା ଯେ, ଉଇମାନଙ୍କର ଇଞ୍ଜିନିୟରିଂ ବୁଦ୍ଧି କେତେ ବେଶି । ଅତି କ୍ଷୁଦ୍ର ପ୍ରାଣୀ ହୋଇ ମଧ୍ୟ ଏଭଳି ସୁନ୍ଦର ଓ ବିରାଟ ଘର କେବଳ ଏକତା ଓ ବୁଦ୍ଧିବଳରେ ହିଁ ସେ ତିଆରି କରେ ।

ଉଇହୁଙ୍କାର ସବା ତଳେ ପାଣିଧାର ରହିଥାଏ । ଉଇ ପ୍ରଥମେ ମାଟିତଳ ଖୋଳି ଖୋଳି ପାଣିଧାରର ସନ୍ଧାନ ନିଏ ଏବଂ ସେହିଠାରେ ଘର ତିଆରି କରେ । ପାଣିଧାରରୁ ହୁଙ୍କାର ଉପର ପର୍ଯ୍ୟନ୍ତ ପାଣି ଆଣିବା ପାଇଁ ସେ କେନାଲ୍ ତିଆରି କରିଥାଏ । ପୁଣି

ହୁଙ୍କାର ଦୁଇପାଖରେ ନର୍ଦ୍ଦମା ଓ ନଳା କରିଥାଏ—ସେହି ବାଟ ଦେଇ ରାଜ୍ୟର ଆବର୍ଜନା, ମଇଳା ପାଣି ଆଦି ଖଲାସ ହୋଇଯାଏ । ତା ଫଳରେ ହୁଙ୍କାର ଭିତର ଅଂଶ ସବୁ ସମୟରେ ପରିଷ୍କାର ଓ




( ଉଇରାଜ୍ୟ ଓ ରାଣୀଭବନ—ପାଖରେ ଠିଆ ହୋଇଥିବା
ମନୁଷ୍ୟ ତୁଳନାରେ ହୁଙ୍କାଟି କେତେ ବଡ଼ ! )

ଶୁଖିଲା ରହିଥାଏ । ହୁଙ୍କାର ପ୍ରତ୍ୟେକ ମହଲକୁ ଯେପରି ପବନ ଯା ଆସ କରିପାରିବ, ସେଥିପାଇଁ ଅତି ସୁନ୍ଦର ବ୍ୟବସ୍ଥା କରାଯାଇଥାଏ ।

ସବା ତଳେ 'ରାଣୀଭବନ'। ରାଣୀ ସବୁବେଳେ ସେଠାରେ ବସିରହି ଅଣ୍ଡା ଦେଉଥାଏ। ସମସ୍ତ ରାଜ୍ୟର ମୂଳପିଣ୍ଡ ସେ। ତେଣୁ ସେଠାରେ ଯେପରି କୌଣସି ବିପଦ ନ ପଡ଼ିବ, ସେଥିପାଇଁ ସବୁ ପ୍ରକାର ବ୍ୟବସ୍ଥା ହୋଇଥାଏ ଓ ରାଣୀମହଲ ପାଇଁ ସେହିପରି ନିରାପଦ ସ୍ଥାନ ବଛା ଯାଇଥାଏ।

ରାଣୀ ଭବନ ଉପରକୁ ଦାସଦାସୀଙ୍କ ମହଲ। ସେମାନେ ରାଣୀର ଖାସ୍ ନୌକର। ରାଣୀକୁ ଖାଦ୍ୟ ଯୋଗାଇବା, ତାର ସେବା ଯତ୍ନ କରିବା, ଅଣ୍ଡାଗୁଡ଼ିକ ନେଇ ଶିଶୁମଙ୍ଗଳ କେନ୍ଦ୍ରରେ ପହଞ୍ଚାଇଦେବା କାମ ଏହି ଦାସଦାସୀଙ୍କର।

ଦାସଦାସୀ ମହଲ ଉପରକୁ ଖାଦ୍ୟଭଣ୍ଡାର—ଗନ୍ତାଘର। ତା ଉପରେ ପବନ ଚଳାଚଳ ପାଇଁ ପ୍ରଶସ୍ତ ଖୁଆଡ଼। ତା ପରେ ଶିଶୁମଙ୍ଗଳ କେନ୍ଦ୍ର। ଅନ୍ୟାନ୍ୟ ମହଲ ଅପେକ୍ଷା ଏହି ଶିଶୁମଙ୍ଗଳ କେନ୍ଦ୍ର ମହଲ ବେଶି ବଡ଼। ଏହା ବିଭିନ୍ନ କୋଠରୀରେ ବିଭକ୍ତ ହୋଇଥାଏ। ଅଣ୍ଡା କେଉଁ ଅବସ୍ଥାରେ କେଉଁ କୋଠରୀରେ ରହିବ, ତାହା ଆଗରୁ ନିର୍ଦ୍ଦିଷ୍ଟ ହୋଇ ରହିଥାଏ।

ତା ଉପରକୁ ଶ୍ରମିକ ଓ ସୈନ୍ୟଫଉଜଙ୍କ ଛାଉଣୀ। ହୁଙ୍କାର ମୁଣ୍ଡ ଉପରେ ପବନ ଚଳାଚଳ କୋଠରୀ।

ଉଇରାଜ୍ୟର ବାସିନ୍ଦାମାନେ ହୁଙ୍କାର ଦୁଇ ପଟରେ ଓ କେନାଲ କୂଳେ କୂଳେ ଥିବା ଘରମାନଙ୍କରେ ରହନ୍ତି। ଅଣ୍ଡାରୁ ଛୁଆ ହୋଇଗଲେ, ସେ ଯେଉଁ ଜାତିର, ସେ ସେହି ମହଲକୁ ମନକୁମନ ଚାଲିଯାଏ ଓ ଅନ୍ୟମାନଙ୍କ ସହିତ ମିଶି ତା କାମରେ ଯୋଗଦିଏ।

———

# ପରୋପକାରୀ ମହୁମାଛି

## ମହୁମାଛିଙ୍କ ରାଜ୍ୟ

ମହୁମାଛିଙ୍କ ଲାଗି ଆମର ବହୁତ ଉପକାର ହୁଏ । ମହୁ ଆମର ଗୋଟିଏ ଭଲ ଖାଦ୍ୟ; ଯେପରି ସ୍ୱାଦୁ, ସେହିପରି ହିତ-କର । ଅନେକ ପ୍ରକାର ଔଷଧରେ ଆମେ ତାହା ଲଗାଇଥାଉ । କି ପିଲା କି ବଡ଼ ମଣିଷ ସମସ୍ତେ ମହୁ ଖାଇବାକୁ ସୁଖ ପାଆନ୍ତି ।

କେବଳ ଆଜିକାଲି ନୁହେ, ହଜାର ହଜାର ବର୍ଷ ହେଲା ଲୋକେ ମହୁକୁ ଆଦର କରି ଆସୁଛନ୍ତି । ମହୁମାଛି ନ ଥିଲେ ଆମେ ଏ ମହୁ ପାଆନ୍ତେ କୁଆଡ଼ୁ ?

ପୁଣି ମହୁମାଛି ପ୍ରଭୃତି କେତେକ ପ୍ରାଣୀଙ୍କ ସକାଶେ ବଣ ଜଙ୍ଗଲ ଓ ବଗିଚାରେ ଗଛ ସଂଖ୍ୟା ବଢ଼େ; ଗଛରେ ଫଳ ଧରେ । ମହୁମାଛି କୌଣସି ଫୁଲରେ ବସିଗଲେ, ଫୁଲରେଣୁ ତା ଗୋଡ଼ରେ ଲାଗିଯାଏ । ମହୁମାଛି ସେଠାରୁ ଉଡ଼ିଆସି ସେହିଜାତିର ଅନ୍ୟ ଗଛର ଫୁଲରେ ବସେ । ସେତେବେଳେ ତା ଗୋଡ଼ରୁ କେତେକ ଫୁଲରେଣୁ ଖସିଫୁଲ ଭିତରେ ପଡ଼େ । ତାହାହେଲେ ସେଥିରେ ଫଳ ଧରେ । ସେ ଫଳ ତ ଆମର ବହୁତ



( ଗୋଟିଏ ମହୁଫେଣା )

କାମରେ ଲାଗେ; ପୁଣି ସେ ଫଳର ମଞ୍ଜି ମାଟିରେ ପଡ଼ି ଅଧିକା ଗଛ ଜନ୍ମେ । ଏହିପରି ଗଛସଂଖ୍ୟା ବଢ଼ୁଥାଏ । ଗଛରେ ଫଳ ଧରିବା ଓ ଗଛ ସଂଖ୍ୟା ପୃଥିବୀରେ ବଢ଼ିବାରେ ପ୍ରଜାପତି, ଭଅଁର, ମହୁମାଛି ପ୍ରଭୃତି ବହୁତ ସାହାଯ୍ୟ କରନ୍ତି ।



ଆମେ ତ ଦେଖିଥାଉଁ, ପୁରୁଣା ଗଛ ଡାଳରେ, ଗଛର କୋରଡ଼ ଭିତରେ, ପାହାଡ଼ ବା ଘରର ଅନ୍ଧାରୁଆ ଖୋପ ଭିତରେ ମହୁଫେଣା ଓହଳିଥାଏ । ଆଜିକାଲି କାଠରେ ଏକ ପ୍ରକାର ବାକ୍ସ ତିଆରି କରି ଲୋକମାନେ ଘରେ ମହୁମାଛି ପୋଷୁଛନ୍ତି । ତା ଫଳରେ ( ମହୁଫେଣା ବା ମହୁମାଛିଙ୍କ ରାଜ୍ୟ ) ଯେତେବେଳେ ଇଚ୍ଛା ସେତେ-ବେଳେ ମହୁ ପାଉଛନ୍ତି । ନିଜେ ତାହା ଖାଉଛନ୍ତି, ପୁଣି ବଜାରରେ ବିକି ପଇସା ମଧ୍ୟ ରୋଜଗାର କରୁଛନ୍ତି ।

ଗୋଟିଏ ଗୋଟିଏ ମହୁଫେଣାରେ ପଚିଶ ହଜାର ପର୍ଯ୍ୟନ୍ତ ମହୁମାଛି ଥାଆନ୍ତି । ଏହା ଫେଣା ତ ନୁହେଁ, ମହୁମାଛିଙ୍କ ରାଜ୍ୟ । ସେହି ରାଜ୍ୟଭିତରେ ସବୁ କାମ ଏତେ ସୁରୁଖୁରୁରେ ହୁଏ ଯେ, ମଣିଷଙ୍କ ରାଜ୍ୟରେ ମଧ୍ୟ ସେପରି ହୁଏ ନାହିଁ ।

ଏହି ମହୁମାଛିରାଜ୍ୟରେ ସାଧାରଣତଃ ତିନ ଜାତିର ମହୁମାଛି ଥାଆନ୍ତି; ମା ବା ରାଣୀ, ପୁରୁଷ ଓ ଶ୍ରମିକା । ମହୁମାଛି-ରାଜ୍ୟର ସବୁ ପ୍ରଜା ମାଈ ମାଛି । ଅଣ୍ଡିରା ମାଛି କେବଳ ଶହେ ମଧ୍ୟରେ ଥାଆନ୍ତି । ପଚିଶ ଷାଠିଏ ହଜାର ଭିତରେ ସେମାନେ ଅତି ନଗଣ୍ୟ । ତେଣୁ




( ୧-ମା ବା ରାଣୀ, ୨—ଶ୍ରମିକା, ୩-ପୁରୁଷ )

ମହାଭାରତରେ କୁହାଯାଇଥିବା "ପ୍ରମିଳା" ରାଜ୍ୟ ଭଳି ମହୁଫେଣା କେବଳ ମହିଳାମାଛିମାନଙ୍କ ରାଜ୍ୟ । ଏଠାରେ ପୁରୁଷର ବିଶେଷ କିଛି କର୍ତ୍ତୃତ୍ୱ ନ ଥାଏ ।

## ମହୁମାଛିର ଦେହ

ଉଇ, ପିମ୍ପୁଡ଼ି, ଜନ୍ଦା ପ୍ରଭୃତି କୀଟମାନଙ୍କର ଦେହ ପରି ମହୁମାଛିର ଦେହ ତିନି ଭାଗରେ ବିଭକ୍ତ । ଏମାନଙ୍କର ଛଅଟି ଗୋଡ଼ ଓ ଦୁଇଟା ପାଣ ଡେଣା ଥାଏ । ଏହି ଡେଣା ଯୋଗେ ସେ ଖୁବ୍ ଯୋରରେ ଉଡ଼ିଯାଇପାରେ ।

ମହୁମାଛିମାନଙ୍କର ଆଖିର ସଂଖ୍ୟା ପାଞ୍ଚ । ସେଥିଭିତରୁ ପ୍ରଧାନ ଆଖି ଦୁଇଟା ଅନେକଗୁଡ଼ାଏ ଛୋଟଛୋଟିକ ଆଖି ମିଶି ଗଢ଼ାଯାଇଥାଏ ।

ଏହାର ମୁହଁ ଅତି ଧାରୁଆ; ପୁଣି ପାଟିରେ ଏକ ପ୍ରକାର ବିଷ ରହିଥାଏ । ତେଣୁ ମହୁମାଛି କାହାରିକୁ କାମୁଡ଼ିଦେଲେ, ବିନ୍ଧାଛୁଟିକା ହୁଏ । ଗୁଡ଼ାଏ ମାଛି ଏକାଠି ମିଶି ଆକ୍ରମଣ କଲେ,

ସେଠାରୁ ବାହ୍ମା ପାଇ ପଳାଇ ଆସିବା ବଡ଼ କଷ୍ଟକର । ବଣଜଙ୍ଗଲରେ ଗୋଟାଏ ଗୋଟାଏ ମହାବଳ ବାଘ ମଧ୍ୟ ଏହି ମହୁମାଛି କାମୁଡ଼ାରେ ମରିଯାଇଥିବାର ଶୁଣାଯାଏ ।

ଶ୍ରମିକା ମହୁମାଛିର ପେଟ ଟିକ୍ ଗୋଟିଏ କାରଖାନା ପରି ସେହି କାରଖାନାରେ ଫୁଲରସରୁ ମହୁ ତିଆରି ହୁଏ. ତିଆରି ହୁଏ । ଯେଉଁ ପଣ୍ଡିତମାନେ ଗବେଷଣା କରିଛନ୍ତି, ସେମାନେ କହନ୍ତି. ଧରି ଚେଷ୍ଟା କଲେ ମଧ୍ୟ ମହୁରୁ ଠିକ କରିପାରିବ ନାହିଁ । ମହୁମାଛି ଗୋଡ଼କର ଫେଣା ବା ଗଛ ସଙ୍ଗେ ସଙ୍ଗେ ମହଣ ତିଆ

ମହୁମାଛିର ଥାଏ । ସେ



( ଗୋଟି

ମୁଣ୍ଡ
ରସ
ସଂ

ପାଟିରେ ଖାଇଦିଏ । ତାହା ପେଟକୁ ଯାଇ ମହୁ ଓ ମହଣରେ ପରିଣତ ହୁଏ ।

ପେଟଭିତରେ ପାକସ୍ଥଳୀ ଉପରକୁ ଗୋଟିଏ ମହୁ ଭଣ୍ଡାର
' । ଫୁଲରସ ଓ ରେଣୁରୁ ମହୁ ତିଆରି ହୋଇ ସେଠି
ଜମା ହୁଏ । ତା ପରେ ମହୁ ପିଠା ବା ମହଣ ହୁଏ ଓ
ଳା ଦେଇ ପେଟତଳକୁ ଚାଲିଆସେ । ମାଛି
। ମହଣ ପଦାକୁ ବାହାର କରି ଆଣେ
ଣା ବା ଘର ତିଆରି କରେ ।

ଛି

ରେ କେବଳ ଗୋଟିଏ
। ବଡ଼ ଓ ଲମ୍ବା ।
ଳ ଅଣ୍ଡା ଦେବା
ଫୁଲରୁ ରସ
ତିଦିନ ଅଣ୍ଡା
ରେ ପର୍ଯ୍ୟନ୍ତ
ଥାଏ ଯେ,
ପ୍ରାନ୍ତରେ
ସେମାନେ
।କୁ ଖାଇ

କେନ୍ଦ୍ର
ନ

ହେବ, ସେଥିପାଇଁ ମହୁଫେଣାର ସବୁ ମାଛି ସର୍ବଦା ଜାଗ୍ରତ ଥାଆନ୍ତି ।

ମା ମାଛି ସାଧାରଣତଃ ଛ ସପ୍ତାହ ଯାଏ ବଞ୍ଚିଥାଏ । କୌଣସି କୌଣସି ଜାତିର ମା ମହୁମାଛି ପ୍ରାୟ ଗୋଟିଏ ବର୍ଷ ମଧ୍ୟ ବଞ୍ଚି ରହିବାର ଦେଖାଯାଇଛି ।

ସେହି ଫେଣାରେ ଯଦି ଆଉ ରାଣୀ ମହୁମାଛି ଜନ୍ମ ହୁଅନ୍ତି, ତେବେ ମା ମାଛି ସେମାନଙ୍କୁ ଅଣ୍ଡା ଛୁଆବେଳୁ ମାରିପକାଏ । ଯେବେ ଗୋଟାଏ ଦୁଇଟା ଦୈବଯୋଗୁ ନ ମରି ରହିଯାଆନ୍ତି ଓ ବଡ଼ ହୁଅନ୍ତି, ତେବେ ମା ମାଛି ସେ ଫେଣାରୁ କେତେଗୁଡ଼ିଏ ଶ୍ରମିକା ଓ ପୁରୁଷ ମାଛିଙ୍କୁ ସଙ୍ଗରେ ଧରି ଅନ୍ୟତ୍ର ଉଡ଼ି ଚାଲିଯାଏ; ଯେଉଁଠାରେ ତାର ନୂଆ ରାଜ୍ୟ ତିଆରି କରେ ।

## ପୁରୁଷ ମାଛି

ଫେଣା ଭିତରେ ଅତି କମ ସଂଖ୍ୟାରେ ପୁରୁଷ ମାଛି ଥାଆନ୍ତି । ଖୁବ୍ ବେଶି ହେଲେ ସେମାନଙ୍କ ସଂଖ୍ୟା ଶହେରୁ ଅଧିକ ହେବ ନାହିଁ । ସେମାନେ ରାଣୀ ବା ମା ମାଛି ଅପେକ୍ଷା ଟିକିଏ ସାନ, କିନ୍ତୁ ମୋଟା । ସେମାନଙ୍କ ପଛଭାଗଟା ଅତି ମୋଟା ହୋଇଥାଏ ।

ମଣିଷଙ୍କ ଭିତରେ ଅତି ମୋଟା ଲୋକ ଯେପରି କୌଣସି ପରିଶ୍ରମ କରିପାରେ ନାହିଁ, ଏହି ପୁରୁଷ ମାଛି ସେହିପରି କିଛି କାମ କରେ ନାହିଁ; ବଡ଼ ଅଳସୁଆ । ଖାଲି ବସି ରହିଥାଏ ଓ ଫେଣାରେ ମହଯୁଦ ରହିଥିବା ଫୁଲରେଣୁ ଖାଉଥାଏ ।

ତା ଜୀବନକାଳରେ ସେ ଥରେ ମାତ୍ର ଯାଇ ରାଣୀମାଛି ସହିତ ଦେଖାକରେ; ତା ପରେ ପରେ ମରିଯାଏ ।

## ଶ୍ରମିକା ମାଛି

ମହୁଫେଣା ଭିତରେ ଶ୍ରମିକା ମାଛିଗୁଡ଼ିକ ପ୍ରଧାନ । ରାଜ୍ୟ ତାଙ୍କର । ସେହିମାନେ ଫେଣା ତିଆରି କରନ୍ତି, ମହୁ ସଂଗ୍ରହ କରି ଆଣି ଜମାନ୍ତି, ରାଜ୍ୟ ପରିଷ୍କାର ପରିଚ୍ଛନ୍ନ ରଖନ୍ତି, ଶତ୍ରୁ ସାଙ୍ଗରେ ଯୁଦ୍ଧ କରନ୍ତି, ଦେଶରେ ଶାନ୍ତିରକ୍ଷା କରନ୍ତି ଓ ନିଜ ଜାତିର ସାନ ବଡ଼ ସବୁ ମାଛିଙ୍କ ହାନିଲାଭ ବୁଝନ୍ତି ।

ଶ୍ରମିକାମାଛିଗୁଡ଼ିକ ଆକାରରେ ସାନ । ସେମାନଙ୍କ ପଛପାଖ ଅଳ୍ପ ସରୁ । ପୁରୁଷମାଛିର ପଛପରି ମୋଟା ନୁହେ କି ରାଣୀମାଛିର ପଛପରି ଲମ୍ବା ମୁନିଆଁ ନୁହେ ।

ଏଗୁଡ଼ିକ ମାଈ ମାଛି । ତେଣୁ ଶ୍ରମିକ ନୁହନ୍ତି ଶ୍ରମିକା । ନିଜ ରାଜ୍ୟର ଓ ଜାତିର ସବୁ କାମ ଏଇମାନେ କରିଥାନ୍ତି । କେହି କାହାରିକୁ କୌଣସି କାମ କରିବାକୁ କେବେ ନିର୍ଦ୍ଦେଶ ଦିଏ ନାହିଁ । ଯାହାର ଯେଉଁ କାମ କରିବାର କଥା, ସେ ସବୁବେଳେ ସେଥିରେ ଲାଗିଥାଏ ।

ଏମାନଙ୍କ ଭିତରେ ନାନାପ୍ରକାର ବିଭାଗ ରହିଛି । ଅଳ୍ପ କେତେକ ରାଣୀ ପାଖରେ ରହିଥାନ୍ତି । ସେମାନେ ରାଣୀଙ୍କ ଖାସ୍‌କାମର ଦାସୀ । ରାଣୀଙ୍କୁ ଖୁଆଇଦେବା, ରାଣୀ ରହୁଥିବା ସ୍ଥାନକୁ ସଫା ସୁତୁରା ରଖିବା, ରାଣୀ ଦେହ ଝାଡ଼ି ସଫା କରିଦେବା ଏମାନଙ୍କ କାମ ।

ରାଣୀ ପାଖରେ ଆଉ ଗୁଡ଼ଏ 'ନର୍ସ' ମାଛି ଥାଆନ୍ତି । ରାଣୀ ପ୍ରତିଦିନ ଯେ ଅସଂଖ୍ୟ ଅଣ୍ଡା ଦିଏ, ତାର ଯତ୍ନ ନେବା ଓ ସେଥିରୁ ଛୁଆ ଜନ୍ମାଇବା ଦାୟିତ୍ୱ ଏମାନଙ୍କର ।

ଆଉ ଗୁଡ଼ଏ ରାଜ୍ୟର ମେହେନ୍ତର ବା ମେହେନ୍ତ୍ରାଣୀ ଥାଆନ୍ତି । ଯେଉଁଠାରେ ଟିକିଏ ମଇଳା ପଡ଼ିଲା ବା ମାଛିଟିଏ ମରିଗଲା, ସେଗୁଡ଼ିକ ସଫାକରି ନେଇ ସେମାନେ ପଦାରେ ପକାଇଦିଅନ୍ତି । ମହୁମାଛିଙ୍କ ରାଜ୍ୟ କେବେ ହେଲେ ଅପରିଷ୍କାର ନ ଥାଏ ।

ଦଳେ ସୈନ୍ୟ ଓ ପହରାବାଲା ମଧ୍ୟ ଥାଆନ୍ତି । କୌଣସି ଶତ୍ରୁ ସେମାନଙ୍କ ରାଜ୍ୟ ଆକ୍ରମଣ କଲେ, ସେମାନେ ଯୁଦ୍ଧ କରନ୍ତି । ଅନ୍ୟ ଫେଣାର ମାଛି ଗୁପ୍ତଚରରୂପେ ଅନେକ ସମୟରେ ସେ ଫେଣାକୁ ଆସିଥାଏ । ତାର ପରିଚୟ ପାଇଲେ ଏହି ସୈନ୍ୟମାନେ ଢେର ତାକୁ ମାରିପକାନ୍ତି ।

ଏମାନଙ୍କୁ ବାଦ୍ ଦେଲେ ବାକି ଯେଉଁ ବହୁସଂଖ୍ୟକ ଶ୍ରମିକା ମାଛି ରହନ୍ତି, ସେମାନେ ଫୁଲରୁ ରେଣୁ ଓ ରସ ସଂଗ୍ରହ କରି ଆଣନ୍ତି । ମହୁ ତିଆରି କରି ଭଣ୍ଡାରରେ ସାଇତି ରଖନ୍ତି, ଫେଣା ତିଆରି କରନ୍ତି, ରାଜ୍ୟ ବଢ଼ାନ୍ତି । ରାଜ୍ୟର ସବୁ ମାଛିଙ୍କୁ ଖାଦ୍ୟ ଓ ବାସଘର ଯୋଗାଇବା ଭାର ଏମାନଙ୍କ ଉପରେ । ଏହି ଦାୟିତ୍ୱ ତୁଲାଇବା ପାଇଁ ସେମାନେ ସବୁ ସମୟରେ କାମରେ ଲାଗି ଥାଆନ୍ତି ।

## ଜୀବନ ବୃତ୍ତାନ୍ତ

ମା ମାଛି ଦୁଇପ୍ରକାର ଡିମ୍ବ ଦିଏ । ଡିମ୍ବରୁ ଅଣ୍ଡିରା ମାଛି ବାହାରିବ କି ମାଈ ମାଛି ବାହାରିବ, ସେ ତାହା ଆଗରୁ

ଜାଣିପାରେ । ଅଣ୍ଡିରା ମାଚ୍ଛି ହେବାର ଥିଲେ, ସେମାନଙ୍କ ପାଇଁ ହୋଇଥିବା ସ୍ୱତନ୍ତ୍ର ଖୋପରେ ସେ ଯାଇ ଡିମ୍ବ ଦେଇଆସେ । ପ୍ରତି ଖୋପରେ ଗୋଟିଏ ଲେଖାଏଁ ଡିମ୍ବ ରହେ । ଅନ୍ୟ ଖୋପରେ ଦିଆଯିବା ଡିମ୍ବଗୁଡ଼ିକରୁ ହୁଏ ତ ରାଣୀ ମାଚ୍ଛି ବାହାରେ ନ ହେଲେ ଶ୍ରମିକା ( ଗୃହକରାଣୀ ବା ପ୍ରଜା ) ମାଚ୍ଛି ହୁଏ । ଏହି ରାଣୀ ବା ଗୃହକରାଣୀ ମାଚ୍ଛି ଥିବା ଡିମ୍ବ ଏକାଭଳି ହୋଇଥାଏ । ଡିମ୍ବ ହେଲା ପରେ ସେମାନଙ୍କ ପ୍ରତି ଯେପରି ସେବାଯତ୍ନ କରାଯାଏ, ସେଥିରୁ ରାଣୀ ବା ପ୍ରଜା ବାହାରିବାର ଜଣାଯାଏ ।

ଡିମ୍ବରୁ ପନ୍ଦର ଦିନ ମଧ୍ୟରେ ଛୁଆ ବାହାରନ୍ତି । ଦୁଇ ତିନ ଦିନଯାଏ ସେମାନେ ଟିକିଏ ଦୁର୍ବଳ ଥାଆନ୍ତି । ସେ ସମୟରେ ସେମାନେ ବହୁତ ଗୁଡ଼ାଏ ଖାଆନ୍ତି । ତା ପରେ ଉଡ଼ି ବୁଲି ନିଜ ନିଜ କାମରେ ଲାଗିଯାଆନ୍ତି ।

## ମହୁମାଛିଙ୍କ କାମ

ମହୁମାଛିମାନଙ୍କର କାମ କେବଳ ମହୁ ସଂଗ୍ରହ କରିବା, ମହଣ ତିଆରି କରି ବସାଘର ବା ଫେଣା ବାନ୍ଧିବା । ସେମାନେ ନିଜେ ଘରେ ଜମାଇ ରଖିଥିବା ମହୁ ପ୍ରାୟ ଖାଆନ୍ତି ନାହିଁ, ଫୁଲରୁ ରସ ଓ ରେଣୁ ସଂଗ୍ରହ କଲାବେଳେ ଯାହା ଖାଇଥାଆନ୍ତି । ବସାରେ ଯେଉଁ ମହୁ ଜମାଇ ରଖନ୍ତି, ତାହା କେବଳ ଆମ ପାଇଁ । ସେମାନେ ରାତିଦିନ ପରିଶ୍ରମ କରି ମହୁ ସଞ୍ଚି ରଖନ୍ତି, ଆମେ ସେମାନଙ୍କଠାରୁ ତାହା ଛଡ଼ାଇ ଆଣି ଖାଉଁ । ତଥାପି ସେମାନଙ୍କ ମନରେ ଦୁଃଖ କଷ୍ଟ ନଥାଏ, ପୁଣି ସେମାନେ ମହୁ ସଂଗ୍ରହ କରି ଜମାଇବାରେ ଲାଗି ପଡ଼ନ୍ତି ।

ମହୁଫେଣା ଭିତରେ ଥିବା ଘରଗୁଡ଼ିକ ଏତେ ସୁନ୍ଦରଭାବରେ ତିଆରି ହୋଇଥାଏ ଯେ, ତାକୁ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ। ଛକୋଣ ବିଶିଷ୍ଟ ଛୋଟଛୋଟ ଖୋପ। ତାହା ଯେପରି ନରମ, ସେହିପରି ପରିଷ୍କାର, ପରିଚ୍ଛନ୍ନ।

ଏହି ଫେଣାଗୁଡ଼ିକ ଏପରି ଭାବରେ ତିଆରି ଯେ, ବର୍ଷାପାଣି ତା ଭିତରେ ପଶିପାରେ ନାହିଁ କି ତାର କିଛି କ୍ଷତି କରେ ନାହିଁ। ଶୀତଦିନେ 'ନର୍ସ' ମାଛି ଛୁଆ ଓ ଡିମ୍ବ ଥିବା ଖୋପ ଉପରେ ଦଳ ବାନ୍ଧି ବସିରହି ସବୁ ସମୟରେ ଜଗିରହିଥାନ୍ତି। ତା ହେଲେ ଖୋପ ଭିତରକୁ ଶୀତ ଯାଇପାରେ ନାହିଁ, ଅଥଚ ବାୟୁ ଚଳାଚଳ କରୁଥାଏ।



( ମହୁଫେଣାର ଖୋପ )

ବସନ୍ତ ଓ ଗ୍ରୀଷ୍ମ ଋତୁହିଁ ସେମାନଙ୍କର ମହୁ ସଂଗ୍ରହ ସମୟ। ସେ ସମୟରେ ସେମାନେ ଯେତେ ମହୁ ଆଣି ଜମାଇ ରଖନ୍ତି, ଶୀତଦିନେ ସେଥିରୁ ଅତି ଅଳ୍ପ ଖାଆନ୍ତି। ବେଶି ମହୁ ଖର୍ଚ୍ଚ ହୋଇଯିବ ବୋଲି ଏହି ସମୟରେ ସେମାନେ ଫେଣାରେ ଥିବା ଅଣ୍ଡିରା ମାଛି, ରୋଗା ମାଛି ବା ବୁଢ଼ୀ ମାଛିମାନଙ୍କୁ ମାରିପକାନ୍ତି। ଏମାନେ ତ କିଛି କାମ କରିପାରିବେ ନାହିଁ, ତୁଚ୍ଛାଟାରେ ବସି ବସି ଖାଇବେ କାହିଁକି ?

# ମହୁମାଛିଙ୍କ ଭାଷା

ମହୁମାଛି ଅବଶ୍ୟ ନିଜନିଜ ମଧ୍ୟରେ ପାଟିରେ ଆମଭଳି କଥାବାର୍ତ୍ତା କରନ୍ତି ନାହିଁ; ମାତ୍ର ସେମାନଙ୍କର ଏପରି ଠାର ଅଛି ଯେ, ଯେଉଁଥିରେ ନିଜ ମନର କଥା ସେମାନେ ଅନ୍ୟକୁ ଜଣାଇ ଦେଇ-ପାରନ୍ତି । ତାହା ହେଉଛି, ନାଚନାଚି ଉଡ଼ି ବୁଲିବା ଭଙ୍ଗୀ ।

ମହୁମାଛିମାନେ ଉଡ଼ି ବୁଲି ଫୁଲବଗିଚା ଖୋଜୁଥାଆନ୍ତି । ଗୋଟିଏ ମାଛି କୌଣସିଠାରେ ବେଶି ଫୁଲ ଥିବାର ଦେଖିଲେ ଓ ସେଥିରେ ବହୁ ପରିମାଣ ରସ ଥିବା କଥା ଜାଣିଲେ, ତା ଉପରେ କିଛି ସମୟ ବସି ଓ ଟିକିଏ ରସ ଧରି ଫେଣାକୁ ଫେରିଆସେ । ସେ ଅନ୍ୟ ମାଛିଙ୍କ ପାଖରେ ଦୁଇଟି ବୃତ୍ତ ତିଆରି ହେଲା ଭଳି



( ଫୁଲ ବଗିଚା ଶହେ ଗଜ ଭିତରେ ଥିଲେ
ମହୁମାଛି ଏହିପରି ଉଡ଼ି ତାର ସୂଚନା ଦିଏ )

ଉଡ଼ି ବୁଲେ । ଅନ୍ୟ ମାଛିମାନେ ସେହି ଉଡ଼ିବା ଭଙ୍ଗୀ ଦେଖି ବୁଝିପାଆନ୍ତି ଯେ, ବହୁତ ଫୁଲରସ ମିଳିବ । ସେମାନେ ତା ଦେହ ଓ ପାଟିରେ ଲାଗି ରହିଥିବା ରସ ଚାଖି ଭଲ ଖାଦ୍ୟ କି

ଛନ୍ତି, ତାହା ପରୀକ୍ଷା କରନ୍ତି । ପରେ ତା ସାଙ୍ଗରେ ଦଳ ବାନ୍ଧି ଫୁଲବଗିଚ୍ଛକୁ ଉଡ଼ିଯାଆନ୍ତି ଓ ମହୁ ସଂଗ୍ରହ କରନ୍ତି ।

ଯଦି ଫୁଲବଗିଚ୍ଛ ଫେଣାଠାରୁ ଶହେ ଗଜ ଭିତରେ ଥାଏ ତେବେ, ସେ ତାର ସୂଚନା ଭିନ୍ନ ପ୍ରକାର ଦିଏ । ଥରେ ଗୋଟିଏ ବୃତ୍ତ ଆକାରରେ ଉଡ଼ି ଆସେ, ପୁଣି ସେହି ବୃତ୍ତର ପରିଧିକୁ କେନ୍ଦ୍ର କରି ଆଉ ଗୋଟିଏ ବୃତ୍ତ କରେ ।

ଫୁଲବଗିଚ୍ଛ ଶହେ ଗଜରୁ ବେଶି ଦୂରରେ ଥିଲେ; ଦୁଇଟିଯାକ ବୃତ୍ତର ପରିଧି ଏକାଠି ଲାଗିଯାଏ । ଏହିପରି ଉଡ଼ି ବୁଲିବା ଦ୍ୱାରା



( ଫୁଲବଗିଚ୍ଛ ଶହେଗଜରୁ ବେଶି ଦୂରରେ ଅଛି )

ସେ ପୁଣି ଜଣାଇଦିଏ ଯେ, ଫୁଲବଗିଚ୍ଛ ତାଙ୍କ ଫେଣାର କେଉଁ ଦିଗରେ ଅଛି ।

ସେ ଫୁଲବଗିଚ୍ଛରେ ଥିବା ସବୁ ଫୁଲରୁ ରସ ସରିବା ପର୍ଯ୍ୟନ୍ତ ମହୁମାଛିଗୁଡ଼ିକ ରସ ଆଣି ଫେଣାରେ ରଖିଥାଆନ୍ତି ଏବଂ ଏହିପରି ଉଡ଼ି ବୁଲି ଅନ୍ୟମାନଙ୍କୁ ଆକୃଷ୍ଟ କରୁଥାଆନ୍ତି । ରସ ସରିଗଲେ ଆଉ ଉଡ଼ନ୍ତି ନାହିଁ; ଫେଣାରେ ଆସି ଚୁପ୍ ହୋଇ ବସିରହନ୍ତି ।

ସେଇଥିରୁ ଫେଣାରେ ରହିଥିବା ଅନ୍ୟ ମାଛିମାନେ ଜାଣିଯାନ୍ତି ଯେ, ଆଉ ସେଠାକୁ ଯିବା ଦରକାର ପଡ଼ିବ ନାହିଁ ।

ହୁଏ ତ କେହିକେହି କହିବେ, ସାମାନ୍ୟ ମହୁମାଛି ବିଷୟରେ ଏତେ କଥା ଜଣାଗଲା କିପରି ? ଏହାକୁ ଜାଣି ବା ଆମର ଲାଭ କଅଣ ? ସେ ମହୁ ତିଆରି କଲେ, ଆମେ ଆଣି ଖାଇଲେ—ଏତିକରେ ତ କାମ ଶେଷ ।

ଆଜିକାଲି ଦୁନିଆରେ ପ୍ରତ୍ୟେକ କଥା ଜାଣିବାକୁ ପଣ୍ଡିତମାନେ ବ୍ୟାକୁଳ । ଏହି ମହୁମାଛିଙ୍କ ସମ୍ପର୍କରେ ଅନୁସନ୍ଧାନ କରି ବହୁ ବୈଜ୍ଞାନିକ ସେମାନଙ୍କ ସାରା ଜୀବନ କଟାଇ ଦେଇଛନ୍ତି । ଜର୍ମାନୀର ଜଣେ ବୈଜ୍ଞାନିକ ଅଧ୍ୟାପକ ଫ୍ରିଶ୍ଚ ଏହି ମହୁମାଛିଙ୍କ ଲାଗି ପୃଥିବୀରେ ଖୁବ୍ ନାମ କରିଯାଇଛନ୍ତି । ସେ ମହୁମାଛିଙ୍କ ବିଷୟରେ ସବୁ କଥା ତନ୍ନତନ୍ନ କରି ପରୀକ୍ଷା କରିଛନ୍ତି ଓ ଆମମାନଙ୍କୁ ତାହା ଜଣାଇଛନ୍ତି । ପ୍ରତ୍ୟେକ ବିଷୟରେ ସବୁ କଥା ଜାଣିବାକୁ ପ୍ରବଳ ଆଗ୍ରହ ଥିବାରୁ ଏ ଯୁଗରେ ବିଜ୍ଞାନର ଏତେ ଉନ୍ନତି ଯିନା ! ଆମ ଦେଶର ଲୋକେ ସେତେ ଆଗ୍ରହୀ ହେଉ ନ ଥିବାରୁ ଆମ ଦେଶ ବିଜ୍ଞାନରେ ବହୁତ ପଛରେ ପଡ଼ିରହିଛି ।

———

# ଜୀଅନ୍ତା ଲଙ୍ଗଳ—ଜିଆ

—୧—

କୋରାପୁଟ ଜିଲ୍ଲାର ଆଦିବାସୀମାନଙ୍କ ମଧ୍ୟରେ ଗୋଟିଏ ମଜାକଥା ପ୍ରଚଳିତ ଅଛି ।

ମହାପ୍ରଭୁ ପ୍ରଥମେ ପୃଥିବୀରେ ମନୁଷ୍ୟ ସୃଷ୍ଟି କଲେ । କିନ୍ତୁ କାମ ନାହିଁ, ମନୁଷ୍ୟମାନେ ଖାଲି ବସି ରହିଥାଆନ୍ତି । ବସି ରହି ରହି ନିଜ ଭିତରେ କଳି ଲଗାଇଦେଲେ ।

ମହାପ୍ରଭୁ ଦେଖିଲେ, ଲୋକଗୁଡାକ ଅଳସୁଆ ହୋଇ ଯାଉଛନ୍ତି । ତେଣୁ ଦଳେ ଲୋକଙ୍କୁ ଲୁଗାବୁଣା କାମରେ ଲଗାଇଲେ । ଆଉ ଦଳେ ଲୋକଙ୍କୁ କହିଲେ, 'ତୁମେ ମାଟି ହାଣି ଜମି ଚାଷ କର, ସେଥିରେ ମଞ୍ଜି ଲଗାଅ, ଫସଲ ଉତ୍ପାଦନ କର ।'

ସେତେବେଳେ ତ ମାଟି ପଥର ପରି ଟାଣ ଥିଲା; ଯେତେ ଖୋଳିଲେ ବି ହାଣି ହେଲା ନାହିଁ । କୋଡ଼ି, କାଙ୍କ ଧାର ଓଲଟି ପଡ଼ିଲା ।

ଲୋକମାନେ ନିରାଶ ହୋଇ ଯାଇ ମହାପ୍ରଭୁଙ୍କ ପାଖରେ ଗୁହାରି କଲେ । କହିଲେ, "ମାଟି ଘର ଟାଣ, ହାଣିହାଣି ଆମେ ଥକିଯାଉଛୁ; ତଳୁ ପୋଟଷେ ହେଲେ ମାଟି ଉଠୁ ନାହିଁ, ଫସଲ କରିବୁ କିପରି ?"

ମହାପ୍ରଭୁ ତତ୍‌କ୍ଷଣାତ୍ ମୁଣ୍ଡରୁ ଗୋଟାଏ ବାଳ ଉପାଡ଼ି ଫିଙ୍ଗିଦେଲେ । ତାହା ତଳେ ପଡ଼ି ଗୋଟାଏ ଲମ୍ବା ପୋକ ହୋଇଗଲା । ତାକୁ କହିଲେ, "ତୁ ଯା ମାଟି ଖୋଳି ହାଲୁକା କରିଦେବୁ । ତା ହେଲେ ଲୋକମାନେ ସୁବିଧାରେ ଚାଷ କରିବେ ।"

ସେହି ପୋକ ହେଲା ଜିଆ ।

—୨—

ଏ ଗଳ୍ପ ଯାହା ହେଉ ନା କାହିଁକି, ଜିଆ ଆମର ବଡ଼



[ ଜିଆର ଗତି ]

ଉପକାରୀ । ମଣିଷ ଜମି ଚାଷ କରିବାକୁ ଶିଖିବା ଆଗରୁ ଜିଆ-ମାନେ ଜମିଚାଷ କରୁଅଛନ୍ତି । ପୃଥିବୀରେ ସବୁପ୍ରକାର ଗଛ ବଢ଼ିବାରେ ଏଇମାନେ ସାହାଯ୍ୟ କରନ୍ତି ।

ଡାରୁଇନ ନାମରେ ଜଣେ ବଡ଼ ପଣ୍ଡିତ ଥିଲେ । ଜୀବଜନ୍ତୁଙ୍କ ବିଷୟରେ ସେ ବହୁତ କଥା ଗବେଷଣା କରିଥିଲେ । ସେ ପ୍ରଥମେ କହିଥିଲେ, ମନୁଷ୍ୟର ପୂର୍ବପୁରୁଷ ମାଙ୍କଡ଼ ।

ସେହି ଡାରୁଇନ ଜିଆ ସମ୍ପର୍କରେ ମଧ୍ୟ ବର୍ଷ ବର୍ଷ ଧରି ପରୀକ୍ଷା ଚଳାଇଥିଲେ । ବହୁ ହିସାବପତ୍ର କରି ସେ ଲେଖିଛନ୍ତି, ଏକ ଏକର ଚାଷ ଜମିରେ ପ୍ରାୟ ପଚିଶ ହଜାର ଜିଆ ରହିଥାଆନ୍ତି । ସେମାନେ ମାଟିକୁ ତ ଖୋଳି ହାଲୁକା କରନ୍ତି; ପୁଣି ଯେତେ ସାର ଯୋଗାନ୍ତି, ତାର ପରିମାଣ ବର୍ଷକୁ ଦଶ ଟନ ହେବ ।

—୩—

ଜିଆଗୁଡ଼ିକ ସାଧାରଣତଃ ମାଟିତଳେ ରହୁଥାଆନ୍ତି । ତାଙ୍କର ଶତ୍ରୁ ବହୁତ ବେଶି । ସେ କାହାର କିଛି କ୍ଷତି କରନ୍ତି ନାହିଁ, ବରଂ ଉପକାର କରୁଥାଆନ୍ତି; ତଥାପି ତାଙ୍କୁ ମାରି ଖାଇବା ପାଇଁ ଅନେକେ ବ୍ୟସ୍ତ ।

କେତେକ ମାଛଧରାଳୀ ତ ମାଟି ଖୋଳି ସେମାନଙ୍କୁ ନିଅନ୍ତି ବନ୍‌ଶୀରେ ଗୁନ୍ଥି ମାଛ ଧରିବା ପାଇଁ । ଏଣ୍ଡୁଅ, ବେଙ୍ଗ, କୁଆ, କୁକୁଡ଼ା ଆଦି ଅନେକ ଜୀବ ଦେଖିଲାକ୍ଷଣି ଏମାନଙ୍କୁ ମାରି ଖାଇ-ଯାଆନ୍ତି । ଆଫ୍ରିକା ପ୍ରଭୃତି ଦେଶରେ କେତେକ ଜାତିର ମନୁଷ୍ୟଙ୍କର ଏହା ପୁଣି ଗୋଟିଏ ପ୍ରଧାନ ଖାଦ୍ୟ ।

ଏହି ଶତ୍ରୁମାନଙ୍କ ଭୟରେ ଜିଆ ସବୁ ସମୟରେ ମାଟି-ଭିତରେ ଲୁଚି ରହିବାକୁ ସୁଖପାଏ । ମାତ୍ର ବର୍ଷା ହେଲେ ସେ ବାଧ ହୋଇ ମାଟିଭିତରୁ ବାହାରିଆସି ପଦାରେ ବୁଲେ, ରହିବା ପାଇଁ ନିରୋଳା ଜାଗା ଖୋଜେ ।

ସାଧାରଣତଃ ଭୂମିର ଇଞ୍ଚେ ବା ଦୁଇ ଇଞ୍ଚ ତଳେ ଜିଆ ରହୁଥାଏ । ମାତ୍ର ସ୍ଥାନେ ସ୍ଥାନେ ପାଞ୍ଚ ଫୁଟ ତଳକୁ ମଧ୍ୟ ସେ ଗାତ ଖୋଳି ଚାଲିଯାଇଥିବାର ଦେଖାଯାଇଛି । ଯେଉଁଠାରେ ବେଶି ତଳେ ଜିଆମାନେ ରହନ୍ତି, ସେଠାରେ ସେମାନେ ଗୋଟି ଗୋଟି ହୋଇ ରହିଥିବାର ଦେଖାଯାଏ ନାହିଁ, ଗୁଡ଼ାଏ ଜିଆ ଏକାଠି ମେଞ୍ଚା ହୋଇ ମୁଣ୍ଡଳି ବାନ୍ଧି ରହିଥାଆନ୍ତି ।

ଯେଉଁମାନେ ମାଟିରେ ଗାତ ଖୋଳନ୍ତି, ସେମାନେ ସେ ମାଟିକୁ ବୋହି ଆଣି ପଦାରେ ପକାନ୍ତି । ତେଣୁ ଥରକୁଥର ଗାତ



ଭିତରକୁ ଯାଇ ପୁଣି ଫେରିବାକୁ ପଡ଼ୁଥାଏ । ସେଥିପାଇଁ କାରଣରୁ ଗାତ ବେଶି ଚଉଡ଼ା ହେବା ଦରକାର । ମାତ୍ର ଜିଆ ଗାତ ଠିକ୍ ଜିଆ ଦେହ ମୋଟରେ ହୋଇଥାଏ । ଜିଆ ମୁହଁରେ ଗାତ ଖୋଳି ସେ ମାଟିତକ ଖାଇଦିଏ । ତା ପେଟ ଭିତର ଦେଇ ମାଟି ଲାଞ୍ଜପାଖକୁ ଚାଲିଆସେ । ସେଥିପାଇଁ ଲାଞ୍ଜ ଭୂଇଁ ଉପରେ ମାଟିତକ ଓଗାଳି ପକାଏ । (କାର୍ଯ୍ୟରତ ଜିଆ ଓ ଜିଆମାଟି)

ଅନେକ ସମୟରେ ବାଡ଼ ବଗିଚାରେ ଆମେ ଦେଖୁ ଯେ, ଅତି ଚିକ୍କଣ ଗୋଲଗାଲ ଆକାରର କଳା ମାଟି ମେଞ୍ଚା ବାନ୍ଧି ଗୋଟିଏ ଗୋଟିଏ ଜାଗାରେ ଜମା ହୋଇଥାଏ । ତାକୁ ଜିଆ-ମାଟି କୁହାଯାଏ । ସେଥିପାଇଁ ସ୍ଥାନ ପରୀକ୍ଷା କଲେ ଦେଖିବା, ତା ତଳେ ଜିଆ ରହିଛି । ସେହି ଜିଆ ଗାତ ଖୋଳି ଯେତେ ମାଟି ଖାଇଛି, ତାହା ପେଟଭିତର ଦେଇ ମଳ ରୂପେ ବାହାରି ଆସି ଗାତ ମୁହଁରେ ଜମା ହୋଇଛି ।

—୪—

ଜିଆଗୁଡ଼ିକ ଅତି ସରୁ ଓ ଲମ୍ବା । ଆମ ମୁଣ୍ଡର ବାଳପରି ସରୁ ଏବଂ ଦେଡ଼ ଇଞ୍ଚ, ଦୁଇ ଇଞ୍ଚ ଲମ୍ବର ସାନ ଜିଆ ମଧ୍ୟ ଅଛନ୍ତି । ଏପର୍ଯ୍ୟନ୍ତ ସବୁଠାରୁ ଯେଉଁ ବଡ଼ ଜିଆ ଦେଖାଯାଇଛି; ତାର ଲମ୍ବ ଚାରି ଫୁଟ । ଏମାନଙ୍କ ଦେହ ଅତି ନରମ ଓ ଚିକ୍କଣ । ତେଣୁ ଅକ୍ଲେଶରେ ଯେ କେହି ଏମାନଙ୍କୁ ଗୋଡ଼ରେ ଦଳିଦେଇପାରେ ।

ଜିଆର ଆଖି ନାହିଁ କି କାନ, ନାକ ନାହିଁ । ପାଟି ଅଛି, ମାତ୍ର ଓଠ ନାହିଁ କମ୍ବା ତାହା ମେଲି କରି ହୁଏ ନାହିଁ । ସରୁ ପାଇପ ମୁହଁ ପରି ତାହା ଗୋଲ । ସେ ସେହି ମୁହଁକୁ ମାଟିରେ ପୁରାଇ-ଦେଲେ ତା ଭିତରେ ମାଟି ପଶିଯାଏ ଏବଂ ଦେହ ଭିତରେ ନଳୀ ଦେଇ ଲଞ୍ଜ ପାଖକୁ ଚାଲି ଆସେ । ପୁଣି ତାର ଦୁଇପାଖ ଯାକ ମୁହଁ ଓ ଦୁଇ ପାଖଯାକ ଲଞ୍ଜ । ଯେଉଁ ପାଖ ଆଗକୁ ରହିଲା, ସେ ହେଲା ମୁହଁ । ଜିଆଟିଏ ଚାଲିଯାଉଥିବା ବେଳେ ତୁମେ ଆଗରୁ ବାଧାଦେଲେ ଦେଖିବ, ସେ ଲଞ୍ଜ ·ଆଗକୁ ବଢ଼ାଇ ବିପରୀତ ଦିଗରେ ଚାଲିଯିବ ।

ଜିଆର ଦେହ କେତେଗୁଡ଼ିଏ ମୁଦିଆ ଯୋଡ଼ା ହୋଇ ତିଆରି ହୋଇଥାଏ । ଏହି ମୁଦିଆର ସଂଖ୍ୟା ୧୫୦ ବା ତହିଁରୁ ବେଶି । ପ୍ରତ୍ୟେକ ମୁଦିଆରେ ଚାରିଯୋଡ଼ା ଲେଖାଏ ଅତି ସରୁ ଲୋମ ଥାଏ । ଏହା ଆମକୁ ଖାଲି ଆଖିରେ ଦେଖାଯାଏ ନାହିଁ । ଏହି ଲୋମଗୁଡ଼ିକ ଆଖି, କାନ ନାକ ଓ ଚମର କାମ କରେ । ଏହାର ସାହାଯ୍ୟରେ ସେ ପାଣି ମଧ୍ୟ ପିଏ ।

ମଜାର କଥା, ଜିଆଟାକୁ ଦୁଇଖଣ୍ଡ କରି କାଟିଦେଲେ, ସେ ମରିଯିବ ନାହିଁ । ଯେତେ ଖଣ୍ଡ ହୋଇ କଟା ହୋଇଥିବ, ସେଇଟା ସ୍ୱତନ୍ତ୍ର ଜିଆ ହୋଇ ଚାଲିଯିବେ । ମାତ୍ର ଏହି କଟା ଅଂଶରେ ପନ୍ଦରଟା ମୁଦିଆରୁ କମ ରହିଲେ, ସେ ଖଣ୍ଡିକ ଆଉ ବଞ୍ଚିବ ନାହିଁ ।

ଜିଆ ପେଟଟା ଗୋଟାଏ ରବର ନଳୀ ବ୍ୟତୀତ ଆଉ କିଛି ନୁହେଁ । ମାଟି ବା କୌଣସି ଖାଦ୍ୟଜିନିଷ ଏ ନଳୀରେ

ପଶିଲେ, ଯେଉଁ ସ୍ଥାନରେ ତାହା ଚଢେ, ସେ ସ୍ଥାନଟା ଟିକିଏ ମୋଟା ଦିଶେ । ତା ପରେ ତାହା ଧୂଆଁଧୂଆଁ ପଛକୁ ଗୁଳିଯାଏ । ତା ଦେହର ତଳଭାଗରୁ ଗୁଡେ ଅଂଶରେ ଏକପ୍ରକାର ଥଳୀ



( ଜିଆ ପେଟ )

ଥାଏ । ସେହି ଥଳୀ ଭିତରେ ଅଣ୍ଡା ପୂରି ରହିଥାଏ । ସେହିଠାରେ ଅଣ୍ଡା ଛୁଆ ହୋଇ ବଢେ । ସେ ବୁଲିବୁଲି କରିବାକୁ ସମର୍ଥ ହେଲେ ଥଳୀରୁ ବାହାରି ପଦାକୁ ଆସେ ।

ଜିଆର ଆଖି, କାନ, ନାକ ନ ଥିଲେ ମଧ୍ୟ ସେ ତାହା ଦେହ ସାହାଯ୍ୟରେ ଦିନ ରାତି ଜାଣି ପାରେ, ଖରା ବର୍ଷା ମଧ୍ୟ ଅନୁଭବ କରିପାରେ ।

ଜିଆ ମାଟି ତ ଖାଏ, କଅଁଳପତ୍ର ଓ ଛୋଟ ଛୋଟ ଗଛର ଅଗ ମଧ୍ୟ ଖାଇ ବଞ୍ଚେ ।

ଓଦା ମାଟି ହିଁ ତାର ରହିବା ସ୍ଥାନ । ମାତ୍ର ଯେଉଁଠାରେ ମାଟି ଶୁଖିଲା, ସେଠାରେ ସେ ତଳ ଖୋଳିଖୋଳି ଓଦାମାଟି ପାଇବା ପର୍ଯ୍ୟନ୍ତ ଯାଏ ଓ ସେହିଠାରେ ନିଶ୍ଚିନ୍ତରେ ରହେ ।

ଜିଆକୁ 'ପ୍ରକୃତିର ଲଙ୍ଗଳ' ବୋଲି ଆଖ୍ୟା ଦିଆଯାଇଛି । ଏହା ଜମି ଖୋଳି ହାଲୁକା କରିଦିଏ । ଏହାଦ୍ୱାରା ସେ ଚାଷୀକୁ ବହୁତ ସାହାଯ୍ୟ କରେ । ମାଟି ନରମା ହୁଏ, ପୁଣି ସେହି ଗାତ ବାଟେ

ସୂର୍ଯ୍ୟକରଣ ଓ ପବନ ମାଟି ତଳକୁ ଯାଇ ଗଛର ଚେରକୁ ଖାଦ୍ୟ ଯୋଗାଏ । ଜିଆ ମାଟିର ଉର୍ବରଶକ୍ତି ବଢ଼ାଏ । ଜିଆ ମଳରେ ଯେଉଁ ସାର ହୁଏ, ତାହା କୃଷିଜମି ପାଇଁ ଅତି ଉତ୍କୃଷ୍ଟ । ଜିଆଯୋଗେ ମାଟି ତଳ ଉପର ହୋଇଯାଏ । ଚୁଷୀର ଲଙ୍ଗଳ ଯେତେ ତଳକୁ ମାଟି ଛାଡ଼ି ନ ପାରିବ, ଜିଆ ସେତେ ତଳକୁ ଯାଇ ମାଟି ଖୋଳି ଉପରକୁ ପଠାଇଦିଏ । ଏହା ଫଳରେ ସେ ଜମିରେ ଗଛ ଭଲ ବଢ଼େ ଓ ଅଧିକ ଫସଲ ଫଳେ ।

ସାମାନ୍ୟ ପୋକଟାଏ ହୋଇ ଜିଆ ଆମର କେତେ ବଡ଼ ଉପକାର ନ କରେ !

# କୀଟଜଗତର ତନ୍ତୀ—ବୁଢ଼ୀଆଣୀ

## ପୃଥିବୀର ପ୍ରଥମ ତନ୍ତୀ

କୋରାପୁଟ ଜିଲ୍ଲାରେ ଆଦିବାସୀ ଜାତିର ବୁଢ଼ୀମାଆମାନେ ସେମାନଙ୍କ ନାତି ନାତୁଣୀଙ୍କ ଆଗରେ ଗୋଟିଏ ଗପ କହନ୍ତି :—

"ଏ ପୃଥିବୀରେ ପ୍ରଥମେ ଯେତେବେଳେ ମଣିଷ ସୃଷ୍ଟି ହେଲେ, ସେତେବେଳେ ସେମାନେ ଲଙ୍ଗଳା ହୋଇ ବୁଲୁଥିଲେ । ତା ପରେ ଗଛର ପତ୍ର, ବକଲା ପ୍ରଭୃତି ପିନ୍ଧିଲେ । ମାତ୍ର କ୍ରମେ ଲୋକସଂଖ୍ୟା ବହୁତ ବଢ଼ିଗଲା; ଗଛରୁ ପତ୍ର ସରି ଆସିଲା ଓ ବକଲା ଆଉ ମିଳିଲା ନାହିଁ । ତେଣୁ ଲୋକଙ୍କ ଭିତରେ ଭାବନା ହେଲା—ସେମାନେ ପିନ୍ଧିବେ କଅଣ ?

ସେମାନଙ୍କର ଯେ ମୁଖିଆ, ସେ ଠାକୁରାଣୀଙ୍କ ପାଖକୁ ଗଲେ । ତାଙ୍କ ଆଗରେ ଲୋକଙ୍କ ଅସୁବିଧା କଥା ଗୁହାରି କଲେ ।

ଠାକୁରାଣୀ ନିଜ ମୁଣ୍ଡ କୁଣ୍ଡାଇ ଅଡ଼ୁଆବାଳ ମେଞ୍ଚାକ ତଳେ ପକାଇଦେଲେ । ସଙ୍ଗେ ସଙ୍ଗେ ତାହା ଗୋଟିଏ ପୋକ ହୋଇଗଲା ।

ଠାକୁରାଣୀ ସେ ପୋକକୁ କହିଲେ, "ତୁ ଏ ଲୋକ ସାଙ୍ଗରେ ଯା ତାଙ୍କ ଘରେ ରହିବୁ, ତାଙ୍କୁ ଲୁଗାବୁଣା ଶିଖାଇବୁ ।"

ସେ ପୋକ ହେଉଛି ବୁଢ଼ୀଆଣୀ । ତାକୁ ଅନେକ ମାଙ୍କଡ଼ସା ବୋଲି କହନ୍ତି । ସେ ଆସି ମଣିଷଙ୍କ ଘରଭିତରେ, ବାଡ଼

ବଗିଚ୍ଛରେ ଜାଲ ବୁଣିଲା । ତାହା ଦେଖି ମଣିଷ ଲୁଗା ବୁଣିବା କଥା ଶିଖିଲା ।

ତେଣୁ ବୁଢ଼ୀଆଣୀକୁ ପୃଥିବୀର ପ୍ରଥମ ତନ୍ତୀ ବା ଜଗତର ତନ୍ତୀ ବୋଲି କୁହାଯାଏ ।

## ବୁଢ଼ୀଆଣୀ ସୂତା

ଆମେ ଆମ ଘର ଭିତରେ ଅନ୍ଧାରୁଆ ଜାଗାରେ ବା ବାଡ଼ ବଗିଚ୍ଛର ଘାସ, ବୁଦାଗଛ ଦେହରେ ପ୍ରତିଦିନ ବୁଢ଼ୀଆଣୀ ବସା ଦେଖୁଥାଉଁ । ସେ ବସା ଜାଲି ଭଳି ଏତେ ସୁନ୍ଦର ଭାବରେ ଛନ୍ଦା ଛନ୍ଦି ହୋଇ ବୁଣା ହୋଇଥାଏ ଯେ, ଦେଖିବାକୁ କୌତୁକ ଲାଗେ । ତାହା ଯେମିତି ପାତଳ, ସେମିତି ନରମ । ହାତରେ ଧରିଲେ ତୁଳା ଭଳି ବୋଧ ହୁଏ, ଅଠାଳିଆ ଜଣାଯାଏ । ଅନେକ ସମୟରେ ସେ ବସାରୁ ଗୋଟାଏ ସୂତା ଛିଡ଼ାଇ ଆଣିଲେ, ତା ତଳେ ବୁଢ଼ୀଆଣୀ ଓହଳି ରହିଥିବାର ଦେଖାଯାଏ । ସୂତା ଏତେ ଟାଣ ଯେ, ଯୋରରେ ନ ହଲାଇଲେ, ତାହା ଛିଡ଼ିଯାଏ ନାହିଁ କି ବୁଢ଼ୀଆଣୀ ତଳେ ଖସିପଡ଼େ ନାହିଁ ।

ପଣ୍ଡିତମାନେ ପରୀକ୍ଷା କରି ଦେଖିଛନ୍ତି, ଷାଠିଏରୁ ଶହେଖିଅ ଯାଏ ବୁଢ଼ୀଆଣୀ ସୂତା ଏକାଠି କରି ବଳିଲେ ଯେତିକି ମୋଟ ହେବ ତାହା ଆମ ମୁଣ୍ଡର ଗୋଟିଏ ବାଳ ସଙ୍ଗେ ସମାନ । କିନ୍ତୁ ତାହା ଏତେ ଟାଣ ଯେ, କେହିଏ ବାଳ ଏକାଠି ବଳି ଦଉଡ଼ି କଲେ ଯେତିକି ଭାରି ଜିନିଷ ଟାଣିପାରିବ, ସେହି ପରିମାଣ ବୁଢ଼ୀଆଣୀ ସୂତାର ଦଉଡ଼ି ତାର ଶହେଗୁଣ ଭାରି ଜିନିଷ ଟାଣି ନେଇପିବ ।

# ବିଭିନ୍ନ ଜାତିର ବୁଢ଼ୀଆଣୀ

ପୃଥିବୀର ଉତ୍ତରମେରୁ ଅଞ୍ଚଳ ଓ ଖୁବ୍ ଉଚ୍ଚ ପର୍ବତ ଉପର ବ୍ୟତୀତ ବୁଢ଼ୀଆଣୀ ଆଉ ସବୁ ଅଞ୍ଚଳରେ ପ୍ରାପ୍ତ ଦେଖାଯାଆନ୍ତି । ଏମାନେ ବିଭିନ୍ନ ପ୍ରକାରର ଓ ବିଭିନ୍ନ ଜାତିର ଅଛନ୍ତି । କ୍ଷୁଦ୍ରମୂନ ଭଳି ଅତି ଛୋଟ ବୁଢ଼ୀଆଣୀ ଅଛନ୍ତି; ପୁଣି ରାକ୍ଷସୀ ବୁଢ଼ୀଆଣୀ ଅଛନ୍ତି—ଯେଉଁମାନଙ୍କ ଦେହ ତିନି ଇଞ୍ଚ ପର୍ଯ୍ୟନ୍ତ ଲମ୍ବା ହୁଏ । ସେମାନଙ୍କ ଗୋଡ଼ସମ୍ବଳିତ ଦେହକୁ ମାପିଲେ ଗୋଟିଏ ଗୋଟିଏ ଛ ସାତ ଇଞ୍ଚ ଲମ୍ବା ଥିବାର ମଧ୍ୟ ଦେଖାଯାଏ ।

ପୁଣି ସବୁ ଜାତିର ବୁଢ଼ୀଆଣୀ ଜାଲ ବୁଣି ବସା କରନ୍ତି ନାହିଁ । କେତେକ ଜାତିର ବୁଢ଼ୀଆଣୀ ମାଟିତଳେ ଗାତ ଖୋଳି ରହନ୍ତି, କେତେକ ପାଣି ଭିତରେ ମଧ୍ୟ ରହୁଥାଆନ୍ତି । ଆଉ କେତେକ ଗଛର କୋରଡ଼, ପାହାଡ଼ ଖୋଲ ବା କାରବାର ହେଉ ନ ଥିବା ଘରର ଅନ୍ଧାରୁଆ ଜାଗାରେ ଆଶ୍ରା ନେଇଥାଆନ୍ତି ।

ନଦୀ, ନାଳ, ପୋଖରୀ, ଗଡ଼ିଆ ପ୍ରଭୃତି ପାଣି ଥିବା ଜାଗାର କୂଳରେ ଅରମା ବଣ ଥିଲେ ସେଠାରେ ବହୁ ସଂଖ୍ୟାରେ ବୁଢ଼ୀଆଣୀ ବସା ଦେଖାଯାଏ । ଏମାନେ ଆମ ଘର ଭିତରେ ବସାକରି ରହୁଥିବା ବୁଢ଼ୀଆଣୀଠାରୁ ଭିନ୍ନ ।

ଆମ ଦେଶରେ ଯେତେ ବୁଢ଼ୀଆଣୀ ଜାଲ ଆମେ ଦେଖୁ, ସେ ସବୁ ମାଈ ମାଙ୍କଡ଼ସା ତିଆରି କରିଥାଏ । ଅଣ୍ଡିରା ମାଙ୍କଡ଼ସା କେବେ ଜାଲ ବୁଣେ ନାହିଁ । ସେମାନଙ୍କ ସଂଖ୍ୟା ମଧ୍ୟ ଅତି କମ୍ । କାରଣ, ମାଈ ମାଙ୍କଡ଼ସା ସେମାନଙ୍କୁ ଖାଇଯାଆନ୍ତି ।

# ଅଣ୍ଡା ଓ ଛୁଆ

ପରୀକ୍ଷାକରି ଦେଖାଯାଇଛି, ଗୋଟିଏ ଗୋଟିଏ ବୁଢ଼ୀଆଣୀ ଥରକେ ପାଞ୍ଚଶହ ପର୍ଯ୍ୟନ୍ତ ଅଣ୍ଡା ଦିଅନ୍ତି । ସେ ଅଣ୍ଡାଗୁଡ଼ିକ ଅତି ସାନ ଓ ମା ବୁଣିଥିବା ସୂତାର ଗୋଟିଏ ଥଳୀ ଭିତରେ ରହିଥାଆନ୍ତି । ସେହି ଥଳୀ ଭିତରେ ଅଣ୍ଡା ଫୁଟି ଛୁଆ ହୁଏ । ଯେଉଁ ଛୁଆ ବଡ଼ ଓ ବଳୁଆ, ସେ ଅନ୍ୟ ସାନ ଓ ଦୁର୍ବଳ ଛୁଆଙ୍କୁ ଖାଇଯାଏ । ତେଣୁ ଗୋଟିଏ ଗୋଟିଏ ଥଳୀରେ ଥିବା ପାଞ୍ଚଶହ ଅଣ୍ଡାରୁ ପଚିଶ ପର୍ଯ୍ୟନ୍ତ ଛୁଆ ବଞ୍ଚିରହନ୍ତି ଓ ବଢନ୍ତି । ବଳ ପାଇଗଲେ ସେମାନଙ୍କ ଚଳବୁଲରେ ଥଳୀଟି ଦୁଇ ଫାଳ ହୋଇ ମେଲା ହୋଇଯାଏ ଓ ଛୁଆମାନେ ସେଥିରୁ ପଦାକୁ ବାହାରି ଆସନ୍ତି । ତାହାପରେ ସୁବିଧାମୁତାବକ ସ୍ଥାନ ବାଛିନେଇ ନିଜ ନିଜର ଜାଲ ବୁଣିବାରେ ଲାଗିଯାଆନ୍ତି । ଗୋଟିଏ ଜାତିର ବୁଢ଼ୀଆଣୀ ଅଛନ୍ତି, ସେମାନେ ଅଣ୍ଡାଦେବା ସଙ୍ଗେସଙ୍ଗେ ମରିଯାଆନ୍ତି ।

ଅନ୍ୟ ଗୋଟିଏ ଜାତିର ବୁଢ଼ୀଆଣୀ ଅଣ୍ଡାକୁ ସବୁ ସମୟରେ ପେଟତଳେ ଧରି ବୁଲୁଥାଆନ୍ତି । ସେହି ପେଟ ତଳେ ଅଣ୍ଡା ଫୁଟି ଛୁଆ ହୁଏ । ଟିକିଏ ବଡ଼ ହୋଇଗଲେ ମା ବୁଢ଼ୀଆଣୀ ଛୁଆଙ୍କୁ ଛାଡ଼ି ଅନ୍ୟତ୍ର ଚାଲିଯାଏ । ସେହି ସମୟରେ ସେ କେତେଗୁଡ଼ାଏ ଛୁଆ ମଧ୍ୟ ଖାଇଯାଇଥାଏ ।

ଅନ୍ୟ ଗୋଟିଏ ଜାତିର ବୁଢ଼ୀଆଣୀ ନିଜ ପିଠିରେ ଛୁଆଙ୍କୁ ଧରି ବୁଲୁଥିବାର ଦେଖାଯାଏ ।

ଯେଉଁ ବୁଢ଼ୀଆଣୀସବୁ ମାଟିତଳେ ରହନ୍ତି, ସେମାନେ ଗୋଟିଏ ସରୁ ଗାତ କରିଥାଆନ୍ତି । ସେ ଗାତମୁହଁରେ ଲଗାଇବା

# ବିଭିନ୍ନ ଜାତିର ବୁଢ଼ୀଆଣୀ

ପୃଥିବୀର ଉତ୍ତରମେରୁ ଅଞ୍ଚଳ ଓ ଖୁବ୍ ଉଚ୍ଚ ପର୍ବତ ଉପର ବ୍ୟତୀତ ବୁଢ଼ୀଆଣୀ ଆଉ ସବୁ ଅଞ୍ଚଳରେ ପ୍ରାୟ ଦେଖାଯାଆନ୍ତି । ଏମାନେ ବିଭିନ୍ନ ପ୍ରକାରର ଓ ବିଭିନ୍ନ ଜାତିର ଅଛନ୍ତି । କ୍ଷୁଦ୍ରମୁନ ଭଳି ଅତି ଛୋଟ ବୁଢ଼ୀଆଣୀ ଅଛନ୍ତି; ପୁଣି ରାକ୍ଷସୀ ବୁଢ଼ୀଆଣୀ ଅଛନ୍ତି—ଯେଉଁମାନଙ୍କ ଦେହ ତିନି ଇଞ୍ଚ ପର୍ଯ୍ୟନ୍ତ ଲମ୍ବା ହୁଏ । ସେମାନଙ୍କ ଗୋଡ଼ସହିତ ଦେହକୁ ମାପିଲେ ଗୋଟିଏ ଗୋଟିଏ ଛ ସାତ ଇଞ୍ଚ ଲମ୍ବା ଥିବାର ମଧ୍ୟ ଦେଖାଯାଏ ।

ପୁଣି ସବୁ ଜାତିର ବୁଢ଼ୀଆଣୀ ଜାଲ ବୁଣି ବସା କରନ୍ତି ନାହିଁ । କେତେକ ଜାତିର ବୁଢ଼ୀଆଣୀ ମାଟିତଳେ ଗାତ ଖୋଳି ରହନ୍ତି, କେତେକ ପାଣି ଭିତରେ ମଧ୍ୟ ରହିଥାଆନ୍ତି । ଆଉ କେତେକ ଗଛର କୋରଡ଼, ପାହାଡ଼ ଖୋଲ ବା କାରବାର ହେଉ ନ ଥିବା ଘରର ଅନ୍ଧାରୁଆ ଜାଗାରେ ଆଶ୍ରା ନେଇଥାଆନ୍ତି ।

ନଈ, ନାଳ, ପୋଖରୀ, ଗଡ଼ିଆ ପ୍ରଭୃତି ପାଣି ଥିବା ଜାଗାର କୂଳରେ ଅରମା ବଣ ଥିଲେ ସେଠାରେ ବହୁ ସଂଖ୍ୟାରେ ବୁଢ଼ୀଆଣୀ ବସା ଦେଖାଯାଏ । ଏମାନେ ଆମ ଘର ଭିତରେ ବସାକରି ରହିଥିବା ବୁଢ଼ୀଆଣୀଠାରୁ ଭିନ୍ନ ।

ଆମ ଦେଶରେ ଯେତେ ବୁଢ଼ୀଆଣୀ ଜାଲ ଆମେ ଦେଖୁ, ସେ ସବୁ ମାଈ ମାଙ୍କଡ଼ସା ତିଆରି କରିଥାଏ । ଅଣ୍ଡିରା ମାଙ୍କଡ଼ସା କେବେ ଜାଲ ବୁଣେ ନାହିଁ । ସେମାନଙ୍କ ସଂଖ୍ୟା ମଧ୍ୟ ଅତି କମ୍ । କାରଣ, ମାଈ ମାଙ୍କଡ଼ସା ସେମାନଙ୍କୁ ଖାଇଯାଆନ୍ତି ।

# ଅଣ୍ଡା ଓ ଛୁଆ

ପରୀକ୍ଷାକରି ଦେଖାଯାଇଛି, ଗୋଟିଏ ଗୋଟିଏ ବୁଢ଼ୀଆଣୀ ଥରକେ ପାଞ୍ଚଶହ ପର୍ଯ୍ୟନ୍ତ ଅଣ୍ଡା ଦଅନ୍ତି । ସେ ଅଣ୍ଡାଗୁଡ଼ିକ ଅତି ସାନ ଓ ମା ବୁଣିଥିବା ସୂତାର ଗୋଟିଏ ଥଳୀଭିତରେ ରହିଥାଆନ୍ତି । ସେହି ଥଳୀଭିତରେ ଅଣ୍ଡା ଫୁଟି ଛୁଆ ହୁଏ । ଯେଉଁ ଛୁଆ ବଡ଼ ଓ ବଳୁଆ, ସେ ଅନ୍ୟ ସାନ ଓ ଦୁର୍ବଳ ଛୁଆଙ୍କୁ ଖାଇଯାଏ । ତେଣୁ ଗୋଟିଏ ଗୋଟିଏ ଥଳୀରେ ଥିବା ପାଞ୍ଚଶହ ଅଣ୍ଡାରୁ ପଚିଶ ପର୍ଯ୍ୟନ୍ତ ଛୁଆ ବଞ୍ଚିରହନ୍ତି ଓ ବଢନ୍ତି । ବଳ ପାଇଗଲେ ସେମାନଙ୍କ ଚଲାବୁଲାରେ ଥଳୀଟି ଦୁଇ ଫାଳ ହୋଇ ମେଲା ହୋଇଯାଏ ଓ ଛୁଆମାନେ ସେଥିରୁ ପଦାକୁ ବାହାରି ଆସନ୍ତି । ତାହାପରେ ସୁବିଧାମୁତାବକ ସ୍ଥାନ ବାଛିନେଇ ନିଜ ନିଜର ଜାଲ ବୁଣିବାରେ ଲାଗିଯାଆନ୍ତି । ଗୋଟିଏ ଜାତିର ବୁଢ଼ୀଆଣୀ ଅଛନ୍ତି, ସେମାନେ ଅଣ୍ଡାଦେବା ସଙ୍ଗେସଙ୍ଗେ ମରିଯାଆନ୍ତି ।

ଅନ୍ୟ ଗୋଟିଏ ଜାତିର ବୁଢ଼ୀଆଣୀ ଅଣ୍ଡାକୁ ସବୁ ସମୟରେ ପେଟତଳେ ଧରି ବୁଲୁଥାଆନ୍ତି । ସେହି ପେଟ ତଳେ ଅଣ୍ଡା ଫୁଟି ଛୁଆ ହୁଏ । ଟିକିଏ ବଡ଼ ହୋଇଗଲେ ମା ବୁଢ଼ୀଆଣୀ ଛୁଆଙ୍କୁ ଛାଡ଼ି ଅନ୍ୟତ୍ର ଚାଲିଯାଏ । ସେହି ସମୟରେ ସେ କେତେଗୁଡ଼ାଏ ଛୁଆ ମଧ୍ୟ ଖାଇଯାଇଥାଏ ।

ଅନ୍ୟ ଗୋଟିଏ ଜାତିର ବୁଢ଼ୀଆଣୀ ନିଜ ପିଠିରେ ଛୁଆଙ୍କୁ ଧରି ବୁଲୁଥିବାର ଦେଖାଯାଏ ।

ଯେଉଁ ବୁଢ଼ୀଆଣୀସବୁ ମାଟିତଳେ ରହନ୍ତି, ସେମାନେ ଗୋଟିଏ ସରୁ ଗାତ କରିଥାଆନ୍ତି । ସେ ଗାତମୁହଁରେ ଲଗାଇବା

ଘାଇଁ ମାଟି ଓ ନିଜ ଦେହର ଅଠାଳିଆ ସୂତା ଯୋଡ଼ି ଗୋଟିଏ କବାଟ କରନ୍ତି । କବାଟଟି ଠିକ୍ ଗାତମୁହଁରେ ଲାଗି ରହେ । ବୁଢ଼ୀଆଣୀ କବାଟଟିକୁ ଅଳ୍ପ ଟିକିଏ ଟେକିଦେଇ ଦୁଆରମୁହଁରେ ଜଗି ବସିଥାଏ । ପାଖରେ ମାଛି, ମଶା ବା କୌଣସି କୀଟ, ପତଙ୍ଗ ଦେଖିଲେ ଚଟ୍‌କରି କାମୁଡ଼ି ଗାତ ଭିତରକୁ ନେଇଯାଏ । ତା ପରେ କବାଟଟା ବନ୍ଦ ହୋଇଯାଏ ।



( ଗାତ ଭିତରେ ରହି ବୁଢ଼ୀଆଣୀ ମାଛିକୁ ଟାଣିନେଉଛି )

ବସ୍ପ ପ୍ରଭୃତି କେତେଟି ପ୍ରାଣୀ ବୁଢ଼ୀଆଣୀଙ୍କର ବଡ଼ ଶତ୍ରୁ । ସେମାନେ ବୁଢ଼ୀଆଣୀକୁ ଖାଇବାକୁ ଆସିଲେ, ସେ ଗାତର କବାଟକୁ ଏତେ ଜୋରରେ ଚାପିଦେଇଥାଏ ଯେ, ଗାତ ଭିତରକୁ କେହି ଯାଇପାରନ୍ତି ନାହିଁ କି ତାର କିଛି କ୍ଷତି ହୁଏ ନାହିଁ ।



## ଦେହର ଗଠନ

ବୁଢ଼ିଆଣୀର ଆଠଗୋଟି ଗୋଡ଼, ଦୁଇଟି ଆଖି । କାହାରି କାହାରି ଚାରି, ଛଅ ବା ଆଠଟା ଆଖି ମଧ୍ୟ ଅଛି ।

(ବସ୍ପଭୟରେ ବୁଢ଼ୀଆଣୀ କବାଟ ବନ୍ଦ କରିଦେଇଛି )

ଏହାର ମୁହଁ ପାଖରେ ଗୋଟିଏ ବିଷଥଳୀ ଅଛି । ସେହି ଥଳୀରୁ ଶିରାବାଟେ ବିଷ ପାଟିଭିତରକୁ ଯାଏ । ତେଣୁ ବୁଢ଼ୀଆଣୀ ଯେଉଁ କୀଟ ବା ପତଙ୍ଗକୁ କାମୁଡ଼ିଦିଏ, ସେ ସଙ୍ଗେସଙ୍ଗେ ବିଷଜ୍ୱାଳାରେ ମରିଯାଏ । ମନୁଷ୍ୟ ବା ବଡ଼ବଡ଼ ଜନ୍ତୁଙ୍କ ପ୍ରତି ଏ ବିଷ ସେତେ

ମାରାତ୍ମକ ନୁହେଁ; ତଥାପି ଦେହର କୌଣସି ଜାଗାରେ ଲାଗିଲେ ଘା କରାଇଦେଇଥାଏ । ବେଳେବେଳେ ବୁଢ଼ୀଆଣୀ ମୂତିବାରୁ ପିଲା ବା ବଡ଼ ମଣିଷଙ୍କ ଦେହରେ ଘା ହୋଇଯାଇଥିବା କଥା



ଲମ୍ବା ଭାବରେ କଟାହୋଇଥିବା ବୁଢ଼ୀଆଣୀର ଦେହ

(୧—ବିଷ ଆସିବା ଶିରା, ୨—ବିଷ ଭଣ୍ଡାର, ୩—ହୃତ୍‌ପିଣ୍ଡ, ୪—କଲଜା, ୫—ସୂତା ତିଆରି ହେବା ଅଠାର ଥଳୀ, ୬—ସୂତା ବାହାରିବା ବାଟ, ୭—ଫୁସ୍‌ଫୁସ୍ )

ଶୁଣାଯାଏ । ମାତ୍ର ଏହା ମୂତ୍ର ନୁହେଁ; ସେମାନଙ୍କ ଦେହର ବିଷ । ଥରେଥରେ ସେମାନେ କେତେକ ପରିମାଣ ବିଷ ଓଗାଳି ପକାନ୍ତି ତାହା ଆମ ଦେହରେ ପଡ଼ିଲେ ଘା ହୋଇଯାଏ ।

ସେମାନଙ୍କ ତଳପେଟର ତଳ ଅଂଶରେ ଗୁଡ଼ିଏ ଅଠାକିଆ ଧଳା ଜିନିଷ ସବୁ ସମୟରେ ମହଜୁଦ ରହିଥାଏ । ସେମାନଙ୍କ ବୟସ ଓ ଦେହର ଆକାର ବଢ଼ିବା ସଙ୍ଗେସଙ୍ଗେ ଏହି ଜିନିଷ ବଢ଼ୁଥାଏ । ଏଇଥିରୁହିଁ ସେ ସୂତା ବାହାର କରି ଜାଲ ବୁଣେ ।

ଆମ ପେଟଭିତର ଭଳି ସେମାନଙ୍କ ପେଟଭିତରେ ହୃଦ୍‌ଯନ୍ତ୍ର, ଫୁସ୍‌ଫୁସ୍ ଓ ପାକସ୍ଥଳୀ ରହିଛି ।

# ବୁଢ଼ୀଆଣୀ ଜାଲ




( ବୁଢ଼ୀଆଣୀର ଜାଲବୁଣା )

ବୁଢ଼ୀଆଣୀ ନିଜ ଘର ତିଆରିବାକୁ ଇଚ୍ଛାକଲେ, ପ୍ରଥମେ ଗୋଟିଏ ମଜବୁତ ସ୍ଥାନରେ ବସେ । ପେଟଭିତରୁ ଅଠା ବାହାର କରି ପଛ ଦୁଇ-ଗୋଡ଼ରେ ସୂତା ବଳେ ଓ ତାକୁ ସେଠାରେ ଲଗାଇଦିଏ । ତା ପରେ ପାଖରେ ଥିବା ଆଉ ଗୋଟିଏ ସ୍ଥାନକୁ ଡେଇଁପଡ଼େ । ସେ ଡେଉଁଥିବା ସଙ୍ଗେସଙ୍ଗେ ପଛ ଦୁଇ ଗୋଡ଼ ସୂତା ତିଆରି କରିବାରେ ଲାଗିଥାଏ (ଛବି-୧) । ଦ୍ୱିତୀୟ ସ୍ଥାନରେ ସୂତା ଲଗାଇ ତୃତୀୟ ସ୍ଥାନକୁ ପୁଣି ଡିଆଁ ମାରେ । ଏହିପରି ଚାରି କଡ଼ରେ ସୂତା ଲଗାଇ ନିଜ ଘରର ସୀମା ସରହଦ ଆଗ ଠିକ୍ କରିନିଏ (ଛବି-୨) । ପରେ ସେହି ଚାରିକଡ଼ର ସୀମାରୁ ସୂତା ଆଣି ଚକର ଅର ଭଳି କେନ୍ଦ୍ରରେ ଦୃଢ଼ଏ ହିଧାଭାବରେ ସୂତା ଟାଣେ ।

ଅର ତିଆର କାମ ସକାଳ-ବେଳକୁ ଘର ଟାଣ ହୋଇ-ଯାଇଥାଏ (ଛବି-୩)। ବୁଢ଼ୀଆଣୀଟି ସବୁ ଅର ମିଶିଥିବା ମଝି ବା କେନ୍ଦ୍ର ସ୍ଥଳରୁ ଗୋଲକରି ଜାଲ ବୁଣିବା ଆରମ୍ଭ କରେ (ଛବି ୪ ଓ ୫) ସେ ଦୁଇ ଅରରେ ସୂତାକୁ ଏଭଳି ଭାବରେ ଛନ୍ଦି ଦେଉଥାଏ ଯେ, ତାହା ଖୁବ୍ ଜୋର ପବନ ବା ବର୍ଷା ନ ହେଲେ କଦାପି ଛିଡ଼ିଯିବ ନାହିଁ।



(ବୁଢ଼ୀଆଣୀର ଜାଲବୁଣା)

ଏହି ଘର ତିଆର କରିବାକୁ ତାକୁ ଘଣ୍ଟାକରୁ ବେଶି ସମୟ ଲାଗେ ନାହିଁ। କିନ୍ତୁ ସେ ସବୁ ସମୟରେ କାମ କରେ ନାହିଁ। ପାଞ୍ଚ ସାତ ମିନିଟ କାମ କଲା ପରେ କିଛି ସମୟ ବିଶ୍ରାମ ନଏ, ପୁଣି କାମରେ ଲାଗିପଡ଼େ। ତେଣୁ ଗୋଟିଏ ଘର ସମ୍ପୂର୍ଣ୍ଣ ତିଆରି ହେବାକୁ ଚାରି ପାଞ୍ଚ ଘଣ୍ଟା ସମୟ ଲାଗେ।

ବୁଢ଼ୀଆଣୀ ସାଧାରଣତଃ ରାତିରେ ବା ଅନ୍ଧାରୁଆ ସମୟରେ ତା ଜାଲ ବୁଣିଥାଏ।

ବେଳେବେଳେ ଗୋଟିଏ ଝରଣାର ଏପାଖରୁ ସେପାଖ ପର୍ଯ୍ୟନ୍ତ କିମ୍ବା ବଡ଼ ଗଛର ଗୋଟିଏ ଡାଳରୁ ଦୂରରେ ଥିବା

ଆଉ ଗୋଟିଏ ଡାଳ ପର୍ଯ୍ୟନ୍ତ ବୁଢ଼ୀଆଣୀଜାଲ ଲଗିଥିବାର ଦେଖାଯାଏ । ବୁଢ଼ୀଆଣୀ ଏତେ ଦୂରକୁ କଦାପି ଡେଇଁ ଯାଇପାରିବ ନାହିଁ । ସେଠାରେ ଜାଲ ବୁଣେ କିପରି ?

ଏହି କଥା ପରୀକ୍ଷା କରିବାପାଇଁ ଜଣେ ଲୋକ ବହୁ ସମୟ ଗୋଟିଏ ଝରଣା ପାଖରେ ବସିରହିଲେ । ସେ ଦେଖିଲେ, ବୁଢ଼ୀଆଣୀ ଝରଣାର ଗୋଟିଏ ପାଖରେ ସୂତା ଲଗାଇ ଡାଳକୁ ଝୁଲୁଅଛି । ଆଗକୁ ଯିବାକୁ ଇଚ୍ଛା, ମାତ୍ର ଯିବାର ଶକ୍ତି ନାହିଁ । ବୁଢ଼ୀଆଣୀଟି ବହୁ ସମୟ ଅପେକ୍ଷା କରି ରହିଲା ପରେ ଜୋରରେ ପବନ ବହିଲା । ସେହି ପବନ ସାଙ୍ଗରେ ମିଶି ସେ ଆର ପାଖକୁ ଉଡ଼ିଗଲା ଓ ସେପାଖରେ ସୂତା ଲଗାଇଲା । ତା ପରେ ଆଉ କିଛି ଅସୁବିଧା ରହିଲା ନାହିଁ । ସେ ସେହି ସୂତା ଉପରେ ଯା ଆସ କରି ଜାଲ ବୁଣିଲା ।

ସ୍କଟଲଣ୍ଡର ରାଜା ବ୍ରୁସ ଓ ବୁଢ଼ୀଆଣୀ କଥା ତ ଆମେ ଜାଣିଥାଉଁ । ରାଜା ବ୍ରୁସ ଶତ୍ରୁମାନଙ୍କ ସାଙ୍ଗରେ ଥରଥର କରି ଛଅ ଥର ଲଢ଼ିଲେ; ସବୁ ଥର ପରାସ୍ତ ହୋଇ ଯାଇ ଲୁଚି ରହିଲେ । ଆଉ ଯୁଦ୍ଧ କରିବେ ନାହିଁ ବୋଲି ସ୍ଥିର କରିନେଲେ ।

ଲୁଚିବା ସ୍ଥାନରେ ଉପରକୁ ମୁହଁ କରି ସେ ଶୋଇ ରହିଥିଲେ । ଦେଖିଲେ, ବୁଢ଼ୀଆଣୀଟିଏ ଜାଲ ବୁଣିବ ବୋଲି ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଡେଉଁଛି; କିନ୍ତୁ ସେ ସ୍ଥାନରେ ପହଞ୍ଚି ନ ପାରି ତଳେ ପଡ଼ିଯାଉଛି । ଥରେ, ଦୁଇଥର, ତିନି ଥର— ଏହିପରି ଛ ଥର ସେ ଚେଷ୍ଟା କଲା; ମାତ୍ର ସବୁଥର ତଳେ ପଡ଼ିଗଲା । ତଥାପି ନିରାଶ ହେଲା ନାହିଁ । ସପ୍ତମ ଥର ଡେଇଁଲା ଓ ଏଥରକ ଠିକ୍ ସ୍ଥାନରେ ପହଞ୍ଚି ସୂତା ଲଗାଇଲା ।

ଏହା ଦେଖି ବ୍ରୁସ ମନରେ ଭାବିଲେ, ଛୋଟ ବୁଢ଼ୀଆଣୀଟାଏ ଯଦି ଛଅ ଥର ନ ପାରି ସପ୍ତମ ଥରକୁ କାମ ହାସଲ କଲା, ତେବେ ମୁଁ କାହିଁକି ନ ପାରିବି ? ସେ ପୁଣି ସାହସ ବାନ୍ଧି ଯୁଦ୍ଧ କରିବାକୁବାହାରିଲେ ଓ ସେଥର ଯୁଦ୍ଧରେ ଜିଣି ପୁଣି ରାଜା ହେଲେ ।

ଜାଲ ବୁଣିସାରି ବୁଢ଼ୀଆଣୀ ଚୁପ ହୋଇ ମଝିରେ ବସି ରହିଥାଏ । ମାଛି, ମଶା ବା ଛୋଟ ପୋକ ସେ ଜାଲରେ ପଡ଼ିଗଲେ ଜାଲଅଠାରେ ଲାଖିଯାଏ । ସମୁଦାୟ ଜାଲ ହଲିଯାଏ ଓ ବୁଢ଼ୀଆଣୀ ତାହା ଜାଣିପାରେ । ସେ ଦଉଡ଼ି ଆସି ସେ ପୋକର ଗୋଡ଼ପାଖଯାକ ବୁଲି ତାକୁ ସୂତାରେ ଆଗ ବାନ୍ଧିଦିଏ । ପୋକ ଆଉ ପଳାଇ ଯିବାକୁ ବାଟ ପାଏ ନାହିଁ । ବୁଢ଼ୀଆଣୀ ସେହିଠାରେ ବା ତାକୁ ଜାଲର ମଧ୍ୟସ୍ଥଳକୁ ନେଇଯାଇ ଆନନ୍ଦରେ ଖାଏ ।



( ଶିକାର ଅପେକ୍ଷାରେ ବୁଢ଼ୀଆଣୀ )

ବୁଢ଼ୀଆଣୀ ତାର ବିଷବୋଳା ଶୁଣ୍ଢ ଦୁଇଟି ପ୍ରଥମରେ ମାଛି ବା ପୋକ ଦେହରେ ଗଳାଇଦିଏ । ଶିକାର ସଙ୍ଗେସଙ୍ଗେ ଅବଶ ହୋଇ ପଡ଼େ । ସେ ସେହି ଶୁଣ୍ଢ ସାହାଯ୍ୟରେ ତା ଦେହରୁ ସମସ୍ତ ରସ ପାଟିକୁ ଟାଣି ନେଇଯାଏ । ତା ପରେ ଜାଲ ଛିଡ଼ାଇ ଶୁଖିଲା ଦେହଟାକୁ ତଳକୁ ଖସାଇପକାଏ ।

କୌଣସି ବଡ଼ ପୋକ, ଝିଣ୍ଟିପିଟି, ବଗ୍ଘ ପ୍ରଭୃତି ସେ ଜାଲରେ ପଡ଼ିଲେ ବା ସେମାନଙ୍କୁ ଅଳ୍ପ ଦୂରରେ ଦେଖିପାରିଲେ, ବୂଡ଼ୀଆଣୀ ଜାଲ ଛାଡ଼ିଲା ସୂତାଟକ ଗୋଟାଇ ନିଏ ଏବଂ ସେଠା ଛାଡ଼ ପଳାଇଯାଇ ଲୁଚେ ।

ବୂଡ଼ୀଆଣୀ ଜାଲରେ କୌଣସି ଛୋଟ ଜିନିଷଟିଏ ପକାଇଦେଲେ ଦେଖିବ, ମଝିରେ ବସିଥିବା ବୂଡ଼ୀଆଣୀ ସଙ୍ଗେସଙ୍ଗେ ସେଠାକୁ ଦଉଡ଼ିଆସିବ । ତା ଖାଦ୍ୟଦ୍ରବ୍ୟ ହୋଇଥିଲେ ତ ଖାଇବ; ନ ହେଲେ ସେଠାରେ ଜାଲକୁ ଏଭଳିଭାବରେ କାଟିଦେବ ଯେ, ସେ ଜିନିଷଟି ତଳେ ଖସିପଡ଼ିବ । ପୁଣି ସେ ଜାଲ ବୁଣିଦେଇ ଯାଇ ନିଜ ଜାଗାରେ ବସିରହିବ ।

ଅନେକ ସମୟରେ ବୂଡ଼ୀଆଣୀ ତଳେ ବୁଲି ମାଛି ଶିକାର କରୁଥିବାର ଦେଖାଯାଏ । ଛୋଟ ଛୋଟ ପୋକଙ୍କର ଯେ ବୁଦ୍ଧି କେତେ, ତାହା ଏହି ବୂଡ଼ୀଆଣୀର ମାଛି ଶିକାର ନିରୀକ୍ଷଣ କରି ଦେଖିଲେ ବୁଝି ପାରିବ । ମାଛିଟି ଯେଉଁଆଡ଼କୁ ମୁହଁକରି ବସିଥିବ, ବୂଡ଼ୀଆଣୀ ତା ବିପରୀତ ଦିଗରୁ ଛକିଛକି ତା ପାଖକୁ ଆସିବ । ମାଛି ତ ବେଶି ବେଳ ଗୋଟିଏ ସ୍ଥାନରେ ଥୟ ହୋଇ ବସିପାରେ ନାହିଁ । ସେ ଉଡ଼ିଯାଇ ଅନ୍ୟତ୍ର ବସିଲେ ବା ସେହିଠାରେ ମୁହଁ ବୁଲାଇଦେଇ ବସିଲେ, ବୂଡ଼ୀଆଣୀ ନିଜ ମୁହଁ ବୁଲାଇଦେବ । ସେ ଏପରି ଭଙ୍ଗୀ କରିବ ଯେ, ସେଥିରୁ ଜାଣିହେବ, ମାଛିକୁ ସେ ଯେପରି ଆଦୌ ଦେଖି ନାହିଁ । ତା ପରେ ସେ ବୁଲିପଡ଼ି ମାଛିର ପଛକୁ ଚାଲିଯିବ । ମାଛିକୁ ଆଗ ପାଖରୁ ମଣ କରିବାକୁ ସେ କେବେହେଲେ ଚେଷ୍ଟା କରିବ ନାହିଁ ।

ଅନେକ ସମୟରେ ମାଛି ବୁଢ଼ୀଆଣୀ ଆସିବାର ଜାଣିପାରି ତା ସହିତ 'ଲୁଚକାଳି' ଖେଳେ । ସେ ସ୍ଥିର ହୋଇ ବସିଥାଏ; କିନ୍ତୁ ବୁଢ଼ୀଆଣୀ ପ୍ରତି ଧ୍ୟାନ ଦେଇଥାଏ । ବୁଢ଼ୀଆଣୀ ପାଖକୁ ଆସିଯିବାର ଜାଣି ପାରିଲେ 'ବୁଲିପଡ଼େ । ବୁଢ଼ୀଆଣୀ ସଙ୍ଗେସଙ୍ଗେ ତା ପଛପଟକୁ ଚାଲିଯାଏ । ମଝିରେ ମାଛିକୁ କେନ୍ଦ୍ର କରି ବୁଢ଼ୀଆଣୀ ଏହିପରି ବୃତ୍ତ ଆକାରରେ ଘୂରୁଥାଏ । କିଛି ସମୟ ପରେ ମାଛି କ୍ଲାନ୍ତ ବୋଧକଲେ ଉଡ଼ି ଚାଲିଯାଏ । ବୁଢ଼ୀଆଣୀ ନିରାଶମନରେ ତା ଆଡ଼କୁ କିଛି ସମୟ ଚାହିଁରହେ ।

ଥରେଥରେ ତିନି ଚାରିଗୋଟି ମାଛି ଏକାଠି ହୋଇ ବୁଢ଼ୀଆଣୀ ସହିତ କୌତୁକ କରନ୍ତି । ବୁଢ଼ୀଆଣୀ ଗୋଟିଏ ମାଛି ପାଖକୁ ଗଲାକ୍ଷଣି, ଆଉ ଗୋଟିଏ ମାଛି ତା ଆଗରେ ଆସି ବସିପଡ଼େ । ବୁଢ଼ୀଆଣୀ ପୂର୍ବ ମାଛିକୁ ଛାଡ଼ି ଏ ମାଛିକୁ ଲକ୍ଷ୍ୟ କରେ । ସଙ୍ଗେସଙ୍ଗେ ଅନ୍ୟ ପାଖରେ ଆଉ ଗୋଟିଏ ମାଛି ବସିଥାଏ । ବୁଢ଼ୀଆଣୀର ଲକ୍ଷ୍ୟ ବଦଳିଯାଏ । ତୃତୀୟ ମାଛି ଆଡ଼କୁ ସେ ମୁହାଁଇଲା ବେଳକୁ ଆର ପାଖରେ ଆଉ ଗୋଟିଏ ମାଛି ଉଡ଼ିଆସି ବସେ । ମଝିରେ ବୁଢ଼ୀଆଣୀ, ଚାରିପାଖରେ ଅଳ୍ପ ଦୂରରେ ଗୋଟିଏ ମାଛି । ବୁଢ଼ୀଆଣୀ କେବଳ ଚକାଭଉଁରି ଖେଳିଲା ପରି ଘୂରୁଥାଏ; ଗୋଟିଏ ହେଲେ ମାଛି ଧରିପାରେ ନାହିଁ । ତା ମନ କେବଳ ହାଇଁପାଇଁ ହେଉଥାଏ ।

ସବୁଠାରୁ ବଡ଼ ବୁଢ଼ୀଆଣୀ ଦକ୍ଷିଣ ଆମେରିକାରେ ଦେଖାଯାନ୍ତି । ଏମାନଙ୍କ ଦେହ ତିନି ଇଞ୍ଚ ପର୍ଯ୍ୟନ୍ତ ଲମ୍ବା । ଏମାନଙ୍କର ସାହସ ଅତି ବେଶି । ତାଙ୍କଠାରୁ ଢେର୍ ବଡ଼ ପଶୁ ଓ ପକ୍ଷୀଙ୍କୁ ମାରି ଏମାନେ ଖାଇଯାଆନ୍ତି । ବିଶେଷତଃ ଚଢ଼େଇ ଓ

ଚଡ଼େଇଛୁଆ ଖାଇବାକୁ ଏ ବୂଢ଼ୀଆଣୀ ବେଶି ଭଲପାଏ । ଏହା କବଳରେ ପଡ଼ିଲେ ଚଡ଼େଇ କୌଣସି ମତେ ଜୀବନ ନେଇ ପଳାଇ-ଯିବା ସମ୍ଭବ ନୁହେଁ ।

ଶ୍ଳେଟ ଚଡ଼େଇ ବା ଚଡ଼େଇଛୁଆଟିଏ ଦେଖିଲେ ଏ ବୂଢ଼ୀଆଣୀ ଛକିଛକି ଯାଇ ତା ପେଟତଳେ ପଶିଯାଏ । ପେଟକୁ ଶୁଣ୍ଢରେ ଫୋଡ଼ିଦେବାରୁ ଚଡ଼େଇ ଛଟପଟ ହୋଇ ଓଲଟି ପଡ଼େ; ତା ପେଟ ଉପରକୁ ଓ ପିଠି ତଳକୁ ରହିଥାଏ । ବୂଢ଼ୀଆଣୀ କବଳରୁ ମୁକୁଳିଯିବା ପାଇଁ ତାର ଆଉ ଉପାୟ ନ ଥାଏ । ବୂଢ଼ୀଆଣୀ ଆନନ୍ଦରେ ତା ଦେହରୁ ରକ୍ତ ଶୋଷିନିଏ । କେତେକ ବୂଢ଼ୀଆଣୀ ଚଡ଼େଇ ପେଟତଳର କଅଁଳ ମାଂସ ମଧ ଖାଇଯାଆନ୍ତି ।

## ବୂଢ଼ୀଆଣୀର ଶତ୍ରୁ

କେତେକ ଚଡ଼େଇ, ଝିଟିପିଟି, ବଗ୍ଗୁ, ବିରୁଡ଼ି ପ୍ରଭୃତି ବୂଢ଼ୀଆଣୀର ବଡ଼ ଶତ୍ରୁ । ଝିଟିପିଟି ଓ ବଗ୍ଗୁ ବୂଢ଼ୀଆଣୀକୁ ଖାଇଯାଆନ୍ତି । ବିରୁଡ଼ି ନିଜେ ବୂଢ଼ୀଆଣୀ ଖାଏ ନାହିଁ, ତାକୁ ମାରି ନିଜ ଛୁଆପାଇଁ ସାଇତି ରଖେ । ମାଈ ବିରୁଡ଼ି ଅଣ୍ଡା ଦେବା ଆଗରୁ ବୂଢ଼ୀଆଣୀକୁ ଖୋଜି ବୁଲେ; ଗୋଟିଏ ଦୁଇଟି ଧରିଆଣି ନିଜ ବସାରେ ରଖେ । ପ୍ରଥମେ ସେ ବୂଢ଼ୀଆଣୀକୁ ନିଜ ନାହୁଡ଼ରେ ଫୋଡ଼ି ଦରମରା କରିପକାଏ; ତା ପରେ ତା ଦେହ ଉପରେ ବସି ଅଣ୍ଡା ଦିଏ । ଅଣ୍ଡାଗୁଡ଼ିକ ସେହିଠାରେ ରହିଥାଏ । ଅଣ୍ଡାରୁ ଛୁଆ ବାହାରିବା କ୍ଷଣି ବୂଢ଼ୀଆଣୀ ଦେହରୁ ମାଂସ ଖାଇ ବଢ଼ନ୍ତି ।

ଆମେମାନେ ମଧ୍ୟ କମ ବୁଢ଼ୀଆଣୀ ମାରୁ ନାହିଁ ଘରର ଛାଳ, କୋଣ ପ୍ରଭୃତିରେ ସେମାନେ ଜାଲ ବୁଣନ୍ତି, ଘର ଅସନା କରନ୍ତି; ତେଣୁ ଆମେ ମାରିପକାଉଁ

ବୁଢ଼ୀଆଣୀ ଦ୍ୱାରା ଆମର କିଛି କ୍ଷତି ହୁଏ ନାହିଁ; ବରଂ ଅନେକ ଲାଭ ହୁଏ । ମାଛି, ମଶା ପ୍ରଭୃତି ଆମର କ୍ଷତି କରୁଥିବା ବହୁ କୀଟ ପତଙ୍ଗଙ୍କୁ ବୁଢ଼ୀଆଣୀ ମାରିପକାଏ ତେଣୁ ଏହି କୀଟ ପତଙ୍ଗଙ୍କ ଦାଉରୁ ଆମେ କେତେକ ପରିମାଣରେ ହେଲେ ରକ୍ଷାପାଉଁ ।

ପୁଣି ଆଜିକାଲି ବୁଢ଼ୀଆଣୀ ସୂତା ଗୋଟାଏ ବଡ଼ କାମରେ ଲାଗୁଛି ଯେଉଁ ଦୂରବୀକ୍ଷଣ ଯନ୍ତ୍ର ଯୋଗେ ବୈଜ୍ଞାନିକମାନେ ବହୁତ ବଡ଼ବଡ଼ କାମ କରିପାରୁଛନ୍ତି, ସେହି ଯନ୍ତ୍ରଭିତରେ ବୁଢ଼ୀଆଣୀ ସୂତାର ଜାଲ ଦିଆଯାଇଥାଏ । କାରଣ, ସେ ସୂତାଭଳି ସରୁ ସୂତା ଏପର୍ଯ୍ୟନ୍ତ କେହି ତିଆରି କରିପାରି ନାହାନ୍ତି ।



# ଉଡ଼ନ୍ତାଫୁଲ—ପ୍ରଜାପତି

ପ୍ରଜାପତିଟିଏ ଦେଖିଲେ କେଉଁ ପିଲା ଖୁସି ନ ହୁଏ ? ଯେତେବେଳେ ସେ କୌଣସି ଗଛରେ ବା ଫୁଲ ଉପରେ ବସିଥାଏ, ଥିର୍‌ଥିର୍ ଯାଇ ତାକୁ ଧରି ପକାଇବାକୁ ସମସ୍ତଙ୍କର ମନ ହୁଏ । ପ୍ରଜାପତିଟି ଗୋଟିଏ ଗଛରୁ ଅନ୍ୟ ଗଛକୁ ଉଡ଼ିଗଲେ, ତା ପଛେପଛେ ପିଲାଏ ଗୋଡ଼ାନ୍ତି ।

ପ୍ରଜାପତିଙ୍କ ସୁନ୍ଦର ଚେହେରା ହିଁ ପିଲାଙ୍କ ମନକୁ ଏପରି ଆକୃଷ୍ଟ କରେ । ଏହାକୁ ଉଡ଼ନ୍ତାଫୁଲ କହିଲେ ଅସଙ୍ଗତ ହେବ ନାହିଁ । କାରଣ ଏହାର ଦେହ ଫୁଲପରି କୋମଳ, ପୁଣି ସେଥିପରି ନାନା ରଙ୍ଗରେ ଚିତ୍ରିତ ଫୁଲରେଣୁ ପରି ଏହା ଦେହରୁ ରେଣୁ ଝଡ଼େ ।



ପ୍ରଜାପତିଟିଏ ଗଛଉପରୁ ଆଣି ଧଇଲେ ନାନା ରଙ୍ଗର ସରୁ ଗୁଣ୍ଡ ହାତରେ ଲାଗିଯାଏ । ତା ଦେହ ଓ ଡେଣାରୁ ସେ ଗୁଣ୍ଡଗୁଡ଼ିକ ଝଡ଼ିପଡ଼େ । ଏହା ତା ଦେହର କାନ୍ତି । ଏହା ଏତେ ଛୋଟଛୋଟ ଯେ, ବେଶି ଶକ୍ତିସମ୍ପନ୍ନ ଅଣୁବୀକ୍ଷଣଯନ୍ତ୍ରରେ ନ ଦେଖିଲେ, ଏହାର ଲମ୍ବା ଚଉଡ଼ା ଜାଣିହେବ ନାହିଁ । ଏହି କାନ୍ତି ଯୋଗେ ହିଁ ତା ଦେହ ଏପରି ରଙ୍ଗବେରଙ୍ଗ ଦେଖାଯାଏ—ଯେତେ ଯେପରି କୌଣସି ଚିତ୍ରକର ସୂକ୍ଷ୍ମପୁଣି ତୂଳୀରେ ବିଭିନ୍ନ ରଙ୍ଗ ଲଗାଇ ଏ ଛବିଟି ଆଙ୍କିଛି !

## ବିଭିନ୍ନ ଜାତିର ପ୍ରଜାପତି

ସାନ ବଡ଼ ଆକାରରେ ଓ ବିଭିନ୍ନ ପ୍ରକାର ରଙ୍ଗରେ ବହୁତ ଜାତିର ପ୍ରଜାପତି ଦେଖାଯାଆନ୍ତି । ଏ ସମସ୍ତଙ୍କୁ ଆମେ ସାଧାରଣତଃ ପ୍ରଜାପତି କହିଥାଉଁ; ମାତ୍ର ବୈଜ୍ଞାନିକମାନେ ପ୍ରଜାପତି ଜାତିକୁ ଦୁଇ ପ୍ରଧାନ ଶ୍ରେଣୀରେ ବିଭକ୍ତ କରିଅଛନ୍ତି । ଗୋଟିଏ ହେଉଛନ୍ତି 'ବଟର-ଫ୍ଲାଇ' ( Butterfly ) ଓ ଅନ୍ୟଟି 'ମଥ' ( Moth ) ।

ସେମାନେ ପରୀକ୍ଷା କରି ଦେଖିଅଛନ୍ତି ଯେ, 'ବଟରଫ୍ଲାଇ' ରାତିରେ ଲୁଚି ରହେ; ଦିନଯାକ ଉଡ଼ି ବୁଲେ । 'ମଥ' ଦିନରେ ଗଛପତ୍ର ଗହଳରେ ଲୁଚିରହି ରାତିରେ ପଦାକୁ ବାହାରେ ।



ପୁଣି ବଟରଫ୍ଲାଇ ପ୍ରଜାପତି ମୁହଁରେ ଥିବା ଶୁଣ୍ଢ ଦୁଇଟି ସରୁ ଓ ଲମ୍ବା । ମାତ୍ର ମଥ ମୁହଁର ଶୁଣ୍ଢ ଦୁଇଟି ମୋଟା ଓ ସାନ । ଅଣୁ-ବୀକ୍ଷଣ ଯନ୍ତ୍ରରେ ଏହା ନଡ଼ିଆ ବାହୁଙ୍ଗା ପରି ଦେଖାଯାଏ ।

ପ୍ରଜାପତିର ମୁହଁ ଓ ଶୁଣ୍ଢ
(ଅଣୁବୀକ୍ଷଣ ଯନ୍ତ୍ରରେ ବହୁଗୁଣ ବଡ଼ ଦେଖାହୋଇଛି)



ଏହା ବ୍ୟତୀତ ଆଉ ସାମାନ୍ୟ କେତୋଟି ପ୍ରଭେଦ ଥାଇପାରେ । କିନ୍ତୁ ଅନ୍ୟ ସବୁ ଦିଗରୁ ଦେଖିଲେ, ଏ ଦୁହେଁ ଯେ ଗୋଟିଏ ଶ୍ରେଣୀର କୀଟ, ଏହା ସମସ୍ତେ ସ୍ୱୀକାର କରନ୍ତି ।

'ମଥ' ପ୍ରଜାପତିର ଶୁଣ୍ଢ
(ବହୁଗୁଣ ବଡ଼ ହୋଇଛି)

# ପ୍ରଜାପତିର ଦେହ

ପ୍ରଜାପତିର ଦେହ ଲମ୍ବା ଓ ସରୁ । ମୁଣ୍ଡଠାରୁ ପଛ ଆଡ଼କୁ କ୍ରମଶଃ ମୁନିଆ ହୋଇ ଆସିଥାଏ । ମୁହଁ ଆଗରେ ଦୁଇଟି ଲମ୍ବା ଶୁଣ୍ଢ଼ ରହିଥାଏ । ପ୍ରଜାପତିର ଛଅଟି ପାଦ; ପାଦଗୁଡ଼ିକ ଅତି ସରୁ ହୋଇଥାଏ । ଯେଉଁ ଡେଣା ପାଇଁ ପ୍ରଜାପତିର ଏତେ ସୌନ୍ଦର୍ଯ୍ୟ, ଏତେ ଗର୍ବ; ସେହି ଡେଣା ଦେହର ମଧ୍ୟସ୍ଥଳରୁ ବାହାରିଥାଏ । ଦୁଇ ପାଖରେ ଦୁଇ ଯୋଡ଼ା ଅର୍ଥାତ୍ ମୋଟ ଚାରିଗୋଟା ଡେଣା ଏହାର ଥାଏ । ପ୍ରଜାପତିର ଦେହ ତୁଳନାରେ ଡେଣାର ଚୌଡ଼ା ବେଶି । ମୁହଁ ଆଡ଼କୁ ଥିବା ଦୁଇ ପାଖର ଡେଣା ଦୁଇଟି ପଛ ଡେଣା ଦୁଇଟି ଅପେକ୍ଷା ଟିକିଏ ବଡ଼ ।

ମହୁମାଛି ଭଳି ପ୍ରଜାପତିର ଦେହ ପ୍ରଧାନତଃ ତିନି ଭାଗରେ ବିଭକ୍ତ; ମୁଣ୍ଡ, ଗ୍ରୀବା ଓ ଦେହ । ମୁଣ୍ଡଟି ସାନ ଓ ଗୋଲ୍ ।



ଗ୍ରୀବା ସାନ ହେଲେ ମଧ୍ୟ ମୋଟା । ଏହି ଗ୍ରୀବାରୁ ଚାରି ସରୁଆକ ଗୋଡ଼ ବାହାରିଥାଏ । ଦେହଟା କ୍ରମଶଃ ସରୁ ଓ ଲମ୍ବା ।

ପ୍ରଜାପତି ପାଟିରେ ଗୋଟାଏ ଲମ୍ବା ନଳୀ ଭଳି ଶୁଣ୍ଢ ଥାଏ । ସେ ସେହି ନଳୀକୁ ଫୁଲଭିତରେ ପୂରାଇଦେଇ ଫୁଲର ଡେମ୍ଫକୁ ଲାଗିଥିବା ମହୁଭଣ୍ଡାରୁ ମହୁ ଶୋଷିଆଣେ । ସେହି ସମୟରେ ଫୁଲର ରେଣୁ ତା ଶୁଣ୍ଢ, ଗୋଡ଼ ଓ ଦେହରେ

ଲାଗିରହେ । ପ୍ରଜାପତି ଅନ୍ୟ ଫୁଲଉପରେ ବସିଲେ ପୂର୍ବରୁ ଲାଗିଥିବା ରେଣୁ ସେ ରେଣୁ ସହିତ ମିଶିଯାଏ; ସେଥିପାଇଁ ଫଳ ହୁଏ । ତେଣୁ ଫଳ ଫଳିବାରେ ଓ ଗଛ ସଂଖ୍ୟା ବଢ଼ିବାରେ ପ୍ରଜାପତି ସାହାଯ୍ୟ କରେ । ଏଥିପାଇଁ ସେ ଆମର ବଡ଼ କାମ । କେତେକ ପ୍ରଜାପତି ଆମର ଅପକାର କରନ୍ତି । ଗଛର ଅଗ, କଢ଼ ଓ କଅଁଳ ପତ୍ର କାଟି ଖାଇଯାଆନ୍ତି ଫଳରେ ଗଛ ମରିଯାଏ ।

## ଜନ୍ମରହସ୍ୟ

କଅଁଳ ଅଣ୍ଡା

ପ୍ରଜାପତି ଥରକେ ଅନେକଗୁଡ଼ିଏ ଅଣ୍ଡା ଦିଏ । ଗଛର ପତ୍ରଉପରେ ସାଧାରଣତଃ ଅନ୍ଧାରୁଆ ଜାଗାରେ ଦେଇଥାଏ ।



ଅଣ୍ଡା ଦୁଇଦିନର ପୋକ ଗୁଟି ପାଞ୍ଚ ଦିନର

ଏହି ଅଣ୍ଡାଗୁଡ଼ିକ ଅଦ୍ଭୁତ ପ୍ରକାରର । ଅଣୁବୀକ୍ଷଣ ଯନ୍ତ୍ରରେ ଦେଖିଲେ, ଏହା ଗୋଟିଏ ଗୋଟିଏ ଠିକ ଚତୁର୍ଭୁଜ ପରି ଦେଖାଯିବ । ସେହି ଅଣ୍ଡାରୁ ଦୁଇ ଦିନ ପରେ ଅତି ସାନସାନ ଗୋଟିପୋକ ବାହାରେ । ଗଛର ପତ୍ର ଖାଇ ଏ ପୋକ ବଢ଼େ ଓ

ସେହି ପତ୍ରଉପରେ ବୁଲବୁଲ କରେ । ...ଇବା ଓ ଶୋଇବା—
ଏ ଦୁଇଟି କାମ ବ୍ୟତୀତ ସେ ପୋକ ଆଉ...ଚ୍ଛି ଜାଣେ ନାହିଁ ।
ସେ ଖାଏ ମଧ୍ୟ ଅତି ବେଶି । ତା ଫଳରେ ...ଚାରି ପାଞ୍ଚ ଦିନ
ମଧ୍ୟରେ ତା ଆକାର ବଡ଼ ହୋଇଯାଏ । ଆଉ ...ଦିନ ପରେ
ଦେହଯାକ ଝାଣୁଆ ରୁମ ଦେଖାଯାଏ ଓ ପେଟରେ ...ଗୁଡ଼ାଏ ଗୋଡ଼
ବାହାରେ । ସେତେବେଳେ ତାହା ଠିକ୍ ଗୋଟାଏ ...ବାଳୁଆ ପୋକ



(ସଁବାଳୁଆ) (ଗୁଟି ଭିତରେ ବନ୍ଦୀ) (ଶ୍ରେଷ୍ଠ ପ୍ର...

ପରି ଦେଖାଯାଏ । ଦେହଟାଯାକ ଗଣ୍ଠି, ସତେ ହେପରି ...
ମୁଦିଆ ଏକାଠି ଯୋଡ଼ାଯାଇଛି । ପ୍ରତ୍ୟେକ ଗଣ୍ଠିରେ ନାନା ...
ଚିହ୍ନ ଥାଏ ଓ ସେହି ଚିହ୍ନ ଉପରେ ପରେ ରୁମ ବା ...
ବାହାରିଥାଏ । ସେତେବେଳେ ଏହା ବଡ଼ ଅସୁନ୍ଦର ଦେଖାଏ
ଏହି କୁତ୍ସିତ ପୋକ ଯେ ଦିନେ ଏଡ଼େ ସୁନ୍ଦର ପ୍ରଜାପତି ହୋଇ
ଆମ୍ଭମାନଙ୍କ ମନକୁ ମୋହିବ, ତାହା ସେତେବେଳେ କେହି ବିଶ୍ୱାସ
କରିପାରିବେ ନାହିଁ ।

ଏହି ସଁବାଳୁଆ ପୋକ ଅନେକ ଥର ତା ଦେହରୁ କା...
ଛାଡ଼େ । ତା ପରେ ପୂରାପୂରି ବଡ଼ ହୋଇଗଲେ ପାଟିରୁ ଏକପ୍ରକାର
ଅଠା ବାହାରକରି ଗୋଟିଏ ଗୁଟି ବା ବସା ତିଆରି କରେ (
ତାହାରି ଭିତରେ ନିଜକୁ ନିଜେ ବନ୍ଦୀ କରି ରଖେ । ଗଛ

ଡାଳମାନଙ୍କରେ ଅନେକ ସମୟରେ ଏହି ଗୁଟି ବସା ଲାଗି ରହିଥିବାର ଦେଖାଯାଏ । ଏ ସମୟରେ ସେ କିଛି ଖାଏ ନାହିଁ । ଆଗରୁ ଯାହା ଖାଇଥାଏ, ସେଇଥିରେ ତା ଭୋକ ରହେ ।

ଗୁଟି ବସାଭିତରେ ବନ୍ଦୀ ହୋଇ ତିନି ଚାରି ଦିନ ରହିଲା ପରେ ତଳପାଖ କାଟି ଛୁଆ ପ୍ରଜାପତି ସେଥିରୁ ବାହାରିଆସେ । ସେତେବେଳେ ଡେଣା ଗୁଡ଼ିକ ତା ଦେହରେ ଅଠାଭଳି ଲାଖି-ରହିଥାଏ । ପଦାରେ ଟିକିଏ ଖରା ଓ ପବନ ପାଇଲେ ଦେହରୁ ସେ ଡେଣା ଫିଟିଯାଏ ଓ ପ୍ରଜାପତି ଆନନ୍ଦରେ ଉଡ଼ିବୁଲେ ।

'ମଥ' ଜାତୀୟ ପ୍ରଜାପତିର ଜନ୍ମକଥା ଟିକିଏ ସ୍ୱତନ୍ତ୍ର । ଏହି ଜାତିର ସ୍ତ୍ରୀ ପ୍ରଜାପତି ଫୁଲଉପରେ ବସି ରହି ଅଣ୍ଡା ଦିଏ । ଅଣ୍ଡାଗୁଡ଼ିକ ଫୁଲଭିତରେ ପଡ଼ି ମଧୁକୋଷ ଦେହରେ ଲାଗିରହେ । ମଧୁକୋଷ ବଢ଼ି ଫଳ ହେଲେ ଅଣ୍ଡାରୁ ବାହାରିଥିବା ପୋକ ସେହି ଫଳ ଖାଇ ବଞ୍ଚେ । ଫଳ ବଢ଼ିବା ସଙ୍ଗେସଙ୍ଗେ କେତେକ ପୋକ ତା ଭିତରେ ପଶିଯାଆନ୍ତି । ତେଣୁ ଅନେକ ଫଳ ପାଚିଲା ହେବା ପୂର୍ବରୁ ଝଡ଼ି ଝଡ଼ିପଡ଼େ । ତାକୁ କାଟିଲେ ତା ଭିତରୁ ଏ ପୋକ



ବାହାରନ୍ତି । ଅନ୍ୟ ପୋକଗୁଡ଼ିକ ଫଳ ଉପରେ ରହିଥାଆନ୍ତି । ସଁବାଳୁଆ ଅବସ୍ଥା ପାଇଲା ପରେ ଯାଇ ସେମାନଙ୍କ ଦେହରେ ଡେଣା ବାହାରେ ଓ ସେ ଉଡ଼ି ବୁଲନ୍ତି ।

# ପ୍ରଜାପତିର ଘର

ସାଧାରଣତଃ ଥଣ୍ଡା ସମୟରେ ପ୍ରଜାପତି ଦେଖାଯାଏ ନାହିଁ । ବସନ୍ତ ଋତୁ ଆସିବା ସଙ୍ଗେସଙ୍ଗେ ସେ, ଗୋଟିଏ ଫୁଲରୁ ଅନ୍ୟ ଫୁଲକୁ ଉଡ଼ିବୁଲେ । ଖରାଦିନ ଏହାର ଆନନ୍ଦର ସମୟ ।

ଗରମ ଦେଶରେ ପ୍ରଜାପତିର ଆକାର ବଡ଼ ହୁଏ । ଏତେ ବଡ଼ ପ୍ରଜାପତି ଅଛନ୍ତି, ଯାହାଙ୍କର ଗୋଟିଏ ପାଖ ଡେଣାରୁ ଆର ପାଖ ଡେଣାଯାଏ ମାପିଲେ ଚଉଦ ଇଞ୍ଚ ପର୍ଯ୍ୟନ୍ତ ଚଉଡ଼ା ହେବ । ପୁଣି ଅଧଇଞ୍ଚରୁ କମ ଚଉଡ଼ା ଥିବା ପ୍ରଜାପତି ମଧ୍ୟ ଦେଖାଯାଆନ୍ତି ।

ପ୍ରଜାପତି କେବଳ ସମତଳ ଅଞ୍ଚଳରେ ନ ଥାନ୍ତି, ଖୁବ୍ ଉଚ୍ଚ ପାହାଡ଼ ଓ ପର୍ବତ ଉପରେ ମଧ୍ୟ ଦଳଦଳ ହୋଇ ଉଡ଼ି ବୁଲୁଥିବାର ଦେଖାଯାଆନ୍ତି । ହିମାଳୟ ପର୍ବତର ଖୁବ୍ ଉଚ୍ଚ ସ୍ଥାନରେ ବହୁତ ରକମର ପ୍ରଜାପତି ରହୁଥିବାର ଦେଖାଯାଇଛି ।

ଗୋଟିଏ ଗୋଟିଏ ପାହାଡ଼ରେ ଏତେ ପ୍ରଜାପତି ଡେଣା ମେଲକରି ଦଳ ବାନ୍ଧି ବସିଥାଆନ୍ତି ଯେ, ଦୂରରୁ କେହି ଦେଖିଲେ ଭାବିବ—ସେଠାରେ ଗୋଟିଏ ସୁନ୍ଦର ଗାଲିଚା ବିଛାଯାଇଛି କିମ୍ବା ଗୁଡ଼ାଏ ସୁନ୍ଦର ଫୁଲ ଏକାଠି ଫୁଟିଛି । ସେଠାରେ ପାହାଡ଼ ଦେହ ବା ବୁଦା ଗଛ ପ୍ରଭୃତି କିଛି ଦିଶେ ନାହିଁ ।

ସାଧାରଣତଃ ସବୁ ପ୍ରଜାପତିଙ୍କ ଦେହ ନାନା ରଙ୍ଗରେ ଛିଟି ଛିଟିକିଆ ହୋଇଥାଏ । ଗୋଟିଏ ଜାତିର ପ୍ରଜାପତି ଅଛନ୍ତି, ଯାହାଙ୍କ ଦେହରେ କେବଳ ହଳଦୀ ବୋଳା ହୋଇଥିଲା ଭଳି ଦିଶେ, ଆଉ କୌଣସି ରଙ୍ଗ ତାଙ୍କ ଦେହରେ ନ ଥାଏ ।

କୌଣସି କୌଣସି ପ୍ରଜାପତିଙ୍କ ଦେହର ଆକାର ଓ ରଙ୍ଗ ଏପରି ଯେ, ସେ ରହୁଥିବା ଗଛ ପତ୍ରର ରଙ୍ଗ ସହିତ ତା ଦେହ ଏକାବେଳେକେ ମିଶିଯିବ । ତେଣୁ ପ୍ରଜାପତିର ଶତ୍ରୁ ତାକୁ ଦେଖିଲେ ମଧ୍ୟ ଆଉ ଚିହ୍ନି ପାରିବ ନାହିଁ । ନିଜକୁ ଶତ୍ରୁ କବଳରୁ ରକ୍ଷା କରିବା ପାଇଁ ବିଧାତା ଏ ରୂପ ତାଙ୍କୁ ଦେଇଛନ୍ତି । ଶତ୍ରୁକୁ ଦେଖିଲେ ସେ ଡେଣାକୁ ଯାକି ଡାଳଦେହରେ ଲେପଟାଇ ପଡ଼େ । ତେଣୁ ତାହା ପ୍ରଜାପତି କି ଗଛର ଡାଳ—ଏହା ବୁଝାପଡ଼େ ନାହିଁ ।

ହବୁ ଚଢ଼େଇ ପ୍ରଜାପତି ଖାଆନ୍ତି ନାହିଁ ; ତଥାପି ପ୍ରଜାପତିଙ୍କର ଶତ୍ରୁ କମ ନାହାନ୍ତି । ଅମେ ପ୍ରଜାପତିଟିଏ ଦେଖିଲେ ଆଗ୍ରହରେ ଧରିପକାଉ, ତା ସଙ୍ଗରେ ଖେଳୁ । ଆମର ଯେ ଖେଳ, ପ୍ରଜାପତିର ତାହା କାଳ ହୁଏ । ହାତଘଷା ହୋଇ ତା ଡେଣା ଛିଡ଼ିଯାଏ; ଶେଷକୁ ସେ ମରେ । ପୁଣି ଏଣ୍ଡୁଅ, ଝିଟିପିଟି, ବିଛୁଡ଼ି, ଗୋବରପୋକ ପ୍ରଭୃତି ପ୍ରଜାପତିଙ୍କୁ ମାରି ଖାଇଯାଆନ୍ତି ।



# ଆମର ଦୁଇଟି ବଡ଼ ଶତ୍ରୁ

## ୧—ମାଛି

ଏ ଦୁନିଆରେ ମନୁଷ୍ୟର ବହୁତ ଶତ୍ରୁ ଅଛନ୍ତି । ନିଜେ ମନୁଷ୍ୟ ତ ମନୁଷ୍ୟର ଗୋଟିଏ ବଡ଼ ଶତ୍ରୁ । ସେଥିପାଇଁ ପ୍ରାୟ ସବୁ ସମୟରେ ପୃଥିବୀରେ କଳିଗୋଳ, ମାଲିମୋକଦ୍ଦମା, ମଣ୍ଡାମାରି, ଯୁଦ୍ଧବିଗ୍ରହ ଲାଗି ରହିଥାଏ । ମଣିଷକୁ ମାରିବା ପାଇଁ ଅନ୍ୟ ମଣିଷମାନେ କୋଟି କୋଟି ଟଙ୍କା ଖର୍ଚ୍ଚ କରି ନାନା ଅସ୍ତ୍ର ତିଆରି କରୁଛନ୍ତି ।

ପ୍ରକୃତି ମନୁଷ୍ୟର ଯେପରି ବନ୍ଧୁ, ସେହିପରି ମଧ୍ୟ ଶତ୍ରୁ । ମନୁଷ୍ୟକୁ ସାହାଯ୍ୟ କରିବା ପାଇଁ ପ୍ରକୃତି ବହୁତ କିଛି କାମ କରେ, ପୁଣି ତାକୁ ଧ୍ୱଂସ କରିବା ଲାଗି ଭୂମିକମ୍ପ, ଝଡ଼ତୋଫାନ, ନଈ-ବଢ଼ି ଆଦି ପଠାଇଥାଏ ।

ସିଂହ, ବାଘ, ଭାଲୁ, ସାପ ଆଦି ହିଂସ୍ରଜନ୍ତୁଙ୍କ କଥା ତ ଛାଡ଼ । ସେମାନେ ମନୁଷ୍ୟକୁ ମାରିବା ପାଇଁ ସବୁବେଳେ ଚୁହିଁ ବସିଅଛନ୍ତି ।

ଏହି ସବୁ ଶତ୍ରୁଙ୍କ ଭିତରେ ମାଛି ମଧ୍ୟ ଗୋଟିଏ । ମାଛି ସିନା ଟିକି ପୋକଟିଏ; ମାତ୍ର ମନୁଷ୍ୟକୁ ଯେତେ ପ୍ରକାର ରୋଗ ଦେଇଥାଏ, କରେ ଓ ଯେତେ ସଂଖ୍ୟାରେ ମଣିଷ ମାରେ, ତାହା ସହଜରେ ହିସାବ କରି ହେବ ନାହିଁ ।

## 'ମାଛି ଆମର କ'ଣ କ୍ଷତି କରେ

ବର୍ଷା ଋତୁ ମାସଯାକ ମାଛିଙ୍କ ଉପଦ୍ରବ ଅତି ବେଶି । ଆଷାଢ଼ ମାସ ପ୍ରଥମରୁ ମାଛିସବୁ ଦେଖାଦିଅନ୍ତି । ତା ପରେ ଦିନକୁ ଦିନ ସେମାନଙ୍କ ସଂଖ୍ୟା ଏତେ ବଢ଼େ ଯେ, ତାଙ୍କ ଦାଉରେ ଥୟ ହୋଇ ବସି କିଛି ଖାଇ ହୁଏ ନାହିଁ । କୌଣସି ସ୍ଥାନ ଟିକିଏ ଓଦା ହେଲେ ବା ସାମାନ୍ୟ ଅସନା ହେଲେ, ସେଠାରେ ହଜାର ହଜାର ସଂଖ୍ୟାରେ ମାଛି ଜୁଟି ହୋଇଯାଆନ୍ତି । ଘରଦ୍ୱାର ଗୁଡ଼ିଆଡ଼ ଭଣ ଭଣ ହୋଇ ଉଡ଼ି ବୁଲନ୍ତି । ଯେ କୌଣସି ଖାଦ୍ୟ-



ପଦାର୍ଥ ଥୁଆ ହୋଇଥାଉ ନା କାହିଁକି ତା ଉପରେ ବସିଯାଆନ୍ତି । ଖାଦ୍ୟପଦାର୍ଥ ଉପରେ ବସି ଖାଦ୍ୟର କିଛି ଅଂଶ ଖାଇଗଲେ ବାଧନ୍ତା ନାହିଁ । ମାଛି ପେଟ ତ, କେତେ ଅବା ଖାଦ୍ୟ ଖାଇବ ? ମାତ୍ର ଖାଦ୍ୟ ପଦାର୍ଥରେ ବସିବା ସଙ୍ଗେ ସଙ୍ଗେ ସେ ସେଥିରେ ମଳ ତ୍ୟାଗ କରେ । ତା ଗୋଡ଼ରେ ବା ଦେହରେ ଲାଗିଥିବା ଅସନା ଜିନିଷ—ରୋଗର ମୂଳ ଜୀବାଣୁ ଛାଡ଼ିଦିଏ । ମନୁଷ୍ୟ ତାହା ଖାଇ ରୋଗରେ ପଡ଼େ, ଛଟପଟ ହୁଏ । ଶେଷରେ ମରେ ମଧ୍ୟ ।

ଏହି ମାଛି ସକାଶେ ପୃଥିବୀରେ ପ୍ରତି ବର୍ଷ ଯେତେ ଲୋକ ମରନ୍ତି, ଗୋଟିଏ ବଡ଼ ଯୁଦ୍ଧରେ ବି ସେତେ ମରୁ ନ ଥିବେ । ପ୍ରତ୍ୟେକ ଦେଶରେ ଯେତେ ଲୋକ ଟାଇଫଏଡ଼, ଝାଡ଼ାବାନ୍ତି, ହଇଜା, ବସନ୍ତ ପ୍ରଭୃତି ରୋଗରେ ପଡ଼ନ୍ତି ଓ ଶେଷରେ

ମରନ୍ତି, ତା'ର ହିସାବ ବା କିଏ ରଖୁଛି । ଏ ସମସ୍ତ ରୋଗର ମୂଳ କାରଣ ଏଇ ମାଛି ।

ଏବେ ପୁଣି "ଏନ୍‌ସେଫାଲାଇଟିସ୍" ନାମକ ଗୋଟିଏ ସାଂଘାତିକ ରୋଗ ବାହାରିଛି । ଏହା ଅଳ୍ପ ସମୟ ମଧ୍ୟରେ ଭୟଙ୍କର ଭାବରେ ମାଡ଼ିଯାଉଛି । ଏହି ରୋଗ ପ୍ରଧାନତଃ ପିଲାମାନଙ୍କୁ ଅର୍ଥାତ୍ କେବଳ ତିନି ବର୍ଷରୁ ଆରମ୍ଭ କରି ଆଠ ବର୍ଷ ବୟସର ଶିଶୁମାନଙ୍କୁ ଧରୁଛି ଓ ଚବିଶଘଣ୍ଟା ଭିତରେ ମାରି ପକାଉଛି । ନାଗପୁର, ବମ୍ବେ, ଲକ୍ଷ୍ନୌ, ଦିଲ୍ଲୀ ପ୍ରଭୃତିରେ ଏହା କିଛିଦିନ ତଳେ ବ୍ୟାପିଥିଲା ଓ ସେଥିପାଇଁ ଚହଳ ପଡ଼ିଯାଇଥିଲା । ତା ପୁଣି ଏଭଳି ରୋଗ ଯେ, ଏହା ପାଇଁ ଏପର୍ଯ୍ୟନ୍ତ କୌଣସି ଔଷଧ ଆବିଷ୍କାର କରାଯାଇ ନାହିଁ । ଏ ରୋଗର ପ୍ରଧାନ କାରଣ ମଧ୍ୟ ଏଇ ମାଛି । ମାଛିଙ୍କ ଯୋଗେ ରୋଗ ବୃଦ୍ଧି ବୃଦ୍ଧି ମାଡ଼ିଯାଉଛି ।

ମହୁମାଛି ପରି ମାଛିର ଦେହ ତିନି ଖଣ୍ଡରେ ବିଭକ୍ତ; ମାତ୍ର ମଝି ଅଂଶ ଅନ୍ୟ ପତଙ୍ଗ ସହିତ ମିଶିଯାଇଥାଏ । ଏହାର ଛଅଟି ଗୋଡ଼, ଦୁଇଟି ଡେଣା ଓ ମୁହଁରେ ଦୁଇଗୋଟି ଶୁଣ୍ଢ ଥାଏ । ଏହାର ଗୋଡ଼, ପାଦ ଓ ସମସ୍ତ ଦେହ ଅତି ସରୁସରୁ ରୋମରେ ଢାଙ୍କି ହୋଇଥାଏ । ତେଣୁ ଏ ଯେଉଁଠାରେ ବସିଯାଏ, ସେଠାରେ ଥିବା ମଇଳା ଏହା ଦେହରେ ଲାଗି ରହେ । ସବୁ ସମୟରେ ମାଛି ତାର ଦୁଇ ଶୁଣ୍ଢରେ ମୁହଁ, ଡେଣା ଓ ଦେହକୁ ପୋଛି ଝାଡ଼ି ପକାଉଥିବାର ଦେଖାଯାଏ ।

ଟାଇଫଏଡ୍, ବସନ୍ତ ବା ହଇଜା ରୋଗୀର ଦେହରେ, ମଳରେ, ଛେପଖଙ୍କାରରେ ବା ଲୁଗାପଟାରେ ମାଛି ବସିଲେ, ମାଛି ଗୋଡ଼ ଓ

ଦେହରେ ସେହି ରୋଗର ଜୀବାଣୁ ଲଗି ରହେ । ତା ପରେ ସେ ଆସି ଆମ ଖାଦ୍ୟଦ୍ରବ୍ୟ ଉପରେ ବସେ ଓ ତାର ସ୍ୱଭାବ ଅନୁସାରେ ଝାଡ଼ଝୂଡ଼ ହୁଏ । ତ ଫଳରେ ସେହି ରୋଗର ଜୀବାଣୁ ଆମ ଖାଦ୍ୟରେ ମିଶିଯାଏ । ଆମେ ତାକୁ ଖାଇ ନାନାପ୍ରକାର ରୋଗରେ ପଡ଼ୁ ।

## ଜନ୍ମରହସ୍ୟ

ଆମର ଏଇ ଅତି ବଡ଼ ଶତ୍ରୁଙ୍କୁ ଗୋଟିଗୋଟି ମାରି ଲୋପ କରିଦେବା ସମ୍ଭବ ନୁହେଁ । ଆମେ ପ୍ରତିଦିନ ଯେତେ ମାଛି ମାଇଲେ ବି, ସେମାନଙ୍କ ସଂଖ୍ୟା କମିବ ନାହିଁ । କାରଣ ଗୋଟିଏ ମାଈ ମାଛି ପ୍ରତିଦିନ ହଜାର ହଜାର ସଂଖ୍ୟାରେ ଅଣ୍ଡା ଦିଏ । ଆମେ ଯେତେ ଚେଷ୍ଟା କଲେ ମଧ୍ୟ ଏତେ ସଂଖ୍ୟାରେ ମାଛି ଦିନକ ଭିତରେ ମାରି ପାରିବା ନାହିଁ । ତେଣୁ ବୈଜ୍ଞାନିକ ଉପାୟରେ କୌଣସି ସୁଚିନ୍ତ ବ୍ୟବସ୍ଥା କରା ନ ଗଲେ ପୃଥିବୀରୁ ମାଛି ବଂଶ ଲୋପ କରିବା ଅସମ୍ଭବ । ଯେଉଁ ପଣ୍ଡିତମାନେ ମାଛି ବିଷୟରେ ବର୍ଷ ବର୍ଷ ଧରି ପରୀକ୍ଷା ଚଳାଇଛନ୍ତି, ସେମାନେ କହନ୍ତି, ଗୋଟିଏ ମାଈ ମାଛି ଅପ୍ରେଲଠାରୁ ସେପ୍‌ଟେମ୍ବର ମାସ ମଧ୍ୟରେ ଦଶ ଲକ୍ଷରୁ ବେଶି ଛୁଆ ଜନ୍ମ କରିଥାଏ ।

ଶୀତ ଋତୁରେ ସାଧାରଣତଃ ମାଛି ଦେଖାଯାଏ ନାହିଁ । ଏହି ସମୟରେ ସନ୍ତସନ୍ତିଆ ଜଙ୍ଗଲିଆ ଜାଗାରେ ଅନ୍ଧାରରେ ଯେ କେତୋଟି ମାଛି ଲୁଚି ରହିଥାନ୍ତି । ଶୀତ ଦିନ ଯିବା ସଙ୍ଗେ ସଙ୍ଗେ ସେମାନେ ପଦାକୁ ବାହାରନ୍ତି ଓ ତା ପରେ ସେମାନଙ୍କ ବଂଶ ବଢ଼ିଚାଲେ । ଜ୍ୟେଷ୍ଠ, ଆଷାଢ଼ ମାସ ବେଳକୁ ଆମ ଦେଶରେ ଆମ୍ବ, ପଣସ ପ୍ରଭୃତି ଫଳ ପାଚିଥାଏ । ସେତେବେଳକୁ ମାଛି ପ୍ରାଦୁର୍ଭାବ ଏତେ ବଢ଼ିଯାଇ ଥାଏ ଯେ, ଆମ୍ବ ପଣସ

ଖାଇବା ତ ଦୂରର କଥା, ନିଶ୍ଚିତ ମନରେ ଭାତ ମୁଠାଏ ବ ବସି ଖାଇ ହୁଏ ନାହିଁ । ପଲପଲ ମାଛି ଉଡ଼ିଆସି ଖାଦ୍ୟପଦାର୍ଥ ଉପରେ ବସନ୍ତି, ମୁହଁ ଓ ଦେହ ଚାରିପାଖ ଭଣଭଣ ହୋଇ ଉଡ଼ି-ବୁଲନ୍ତି; ଡାଲି, ତରକାରି, ପାଣି ଗିଲାସରେ ମଧ ଦୁଇ ଚାରିଗୋଟା ପଡ଼ି ମରିଯାଆନ୍ତି ।



ଆଗରୁ କହିଛି, ଗ୍ରୀଷ୍ମ ଦିନ ଆସିବା ସଙ୍ଗେ ସଙ୍ଗେ ମାଛି ଅଣ୍ଡା ଦିଏ । ଏହି ଅଣ୍ଡା ଏତେ ସାନ ଯେ, ସାଧାରଣଙ୍କ ଆଖିକୁ ତାହା ଦେଖାଯିବ ନାହିଁ । ଗୋଟିଏ ଗୋଟିଏ ଅଣ୍ଡା ଏକ ଇଞ୍ଚର କୋଡ଼ିଏ ଭାଗରୁ ଭାଗେ ଲମ୍ବ ହୋଇଥାଏ । ମାଛି ଅଳିଆ ସ୍ଥାନ, ଖତଗଦା ଆଦି ଅପରିଷ୍କାର ଓ ଅନ୍ଧାରୁଆ ଜାଗାରେ ତାର ଅସଂଖ୍ୟ ଅଣ୍ଡା କୁଢ଼ାଇଦିଏ । ଅଣ୍ଡାଗୁଡ଼ିକ ସେହି ଅଳିଆ ଜିନିଷରୁ ରସ ଟାଣି ବଢ଼ିବାକୁ ଲାଗନ୍ତି; ମା ମାଛିକୁ ଆଉ ସେମାନଙ୍କ ପାଇଁ ଭାବିବାକୁ ପଡ଼େ ନାହିଁ ।

କେବଳ ଚବିଶ ଘଣ୍ଟା ଭିତରେ ଏହି ଅଣ୍ଡା ପୋକ ଆକାର ଧାରଣ କରେ । ପାଞ୍ଚ ଦିନ ଯାଏ ଏହି ପୋକସବୁ ସେହି ସ୍ଥାନରେ ପଡ଼ିରହି ବଢ଼ନ୍ତି । ତା ପରେ ସେ ପୋକ ଦେହରେ ଡେଣା ଦେଖାଦିଏ; ସେ ଉଡ଼ି ଅନ୍ୟତ୍ର ଚାଲିଯାଏ । ଦୁଇ ସପ୍ତାହ ପରେ ସେ ପୁଣି ଅଣ୍ଡା ଦେବାକୁ ଆରମ୍ଭ କରେ ।

ଜଣେ ପଣ୍ଡିତ ପରୀକ୍ଷା କରି ଲେଖିଅଛନ୍ତି ଯେ, ଗୋଟିଏ ମାଛି ଥରକେ ଦେଢ଼ ଶହ ଅଣ୍ଡା ଦିଏ । ଏହାଠାରୁ ବରଂ ବେଶି ହୁଏ, କମ୍ ହେବ ନାହିଁ । ଦିନକ ମଧ୍ୟରେ ଏଇ ଥରେ ଯେ ସେ ଅଣ୍ଡା ଦିଏ, ତା ମଧ୍ୟ ନୁହେ; ଆଉ କେତେ ଥର ଦେଉଥିବ ।

ଏହି ଦେଢ଼ ଶହ ଅଣ୍ଡା ମାଛି ହୋଇ ତିନି ସପ୍ତାହ ପରେ ଯେତେବେଳେ ପ୍ରତ୍ୟେକ ଏହି ପରିମାଣରେ ଅଣ୍ଡା ଦେବେ, ସେତେବେଳେ ମାଛି ସଂଖ୍ୟା କେତେ ହେବ, ତାହା ହିସାବ କରିବା କଅଣ ସହଜ ?

## ଜାତିଭେଦ

ମାଛି ଭିନ୍ନଭିନ୍ନ ଜାତିର ଓ ବିଭିନ୍ନ ଆକାରର ଦେଖାଯାଆନ୍ତି । ସାଧାରଣତଃ ପଚିଁଶଲକ୍ଷ ହଜାର ଜାତିର ମାଛି ଅଛନ୍ତି ବୋଲି ହିସାବ କରାଯାଇଛି । ଏହାମଧ୍ୟରୁ ଆମ ଦେଶରେ ସାଧାରଣ ମାଛି, ନେଳୀମାଛି, ଡାଆଁସ, ବିଛୁଡ଼ି ମହୁମାଛି ପ୍ରଭୃତି ପ୍ରଧାନ ।


ମାଛି


ନେଳୀମାଛି


ଡ଼ାଆଁସ

ନେଳୀମାଛି ସାଧାରଣ ମାଛି ଅପେକ୍ଷା ବେଶି ମୋଟ । ଏହାର ଦେହର ରଙ୍ଗ ନେଳୀ ଦେଖାଯାଏ । ଏମାନଙ୍କୁ ଦେଖିଲେ ବେଶି ଘୃଣା ଲାଗେ । ପାଚିଲା ଆମ୍ବ, ପଣସ ପ୍ରଭୃତିର ବାସନା ପାଇଲେ ଏମାନେ ବେଶି ସଂଖ୍ୟାରେ ଉଡ଼ିଆସି ଜମିଯାଆନ୍ତି; ଅନ୍ୟ ସମୟରେ କମ ଦେଖାଯାଆନ୍ତି ।

ଡାଆଁସ ଗୋରୁ, କୁକୁର ପ୍ରଭୃତି ପଶୁଙ୍କ ଦେହରେ ସବୁ ସମୟରେ ଲାଗି ରହିଥାନ୍ତି ଓ ସେମାନଙ୍କ ଚମଡ଼ା ଫୁଟାଇ ରକ୍ତ ପିଅନ୍ତି । ଅନ୍ୟ ମାଛି ଅପେକ୍ଷା ଏମାନଙ୍କ ଦେହ ବେଶି କରଡ଼ା ଓ ଟାଣ ।

## ମାଛିର ଦେହ

ସାଧାରଣ ମାଛି ଇଞ୍ଚକର ଚ୍ଛର ଭାଗରୁ ଭାଗେ ପର୍ଯ୍ୟନ୍ତ ଲମ୍ବ ଦେଖାଯାଆନ୍ତି । ଦୁଇ ପକ୍ଷକୁ ମେଲି କରି ଧଇଲେ ଗୋଟିଏ ଗୋଟିଏ ମାଛିର ଚଉଡ଼ା ଅଧ ଇଞ୍ଚ ପର୍ଯ୍ୟନ୍ତ ହୋଇଥାଏ । ହଜାରେ ମାଛି ଏକାଠି କରି ତୁଳିଲେ ଏକ ଆଉନ୍‌ସ ପର୍ଯ୍ୟନ୍ତ ଓଜନ ହେବ ।



ମାଛିର ଗୋଡ଼ (ବହୁତ ବଡ଼ ଆକାରରେ ଦେଖାହୋଇଛି)

ମାଛିମାନଙ୍କର ଛଅଟି ଗୋଡ଼ । ଗୋଡ଼ ଶେଷରେ ପଞ୍ଝା ଥାଏ । ଏ ପଞ୍ଝା ଗୋରୁ ଖୁରା ଭଳି ଦୁଇ ଫାଳ ହୋଇଥାଏ ଏବଂ ତାହା ରୋମପୂର୍ଣ୍ଣ ଓ ଅଠାଳିଆ । ତେଣୁ ମାଛି ଯେଉଁଠାରେ ଇଚ୍ଛା ସେଠାରେ ଦୃଢ଼ ଭାବରେ ବସିଯାଇ ପାରେ ଚିକ୍କଣ ଗ୍ଲାସ ବା କାଚ ତଳେ ଓହଳ ରହିଯାଏ ।

ମାଛିମାନଙ୍କର ମୋଟ ପାଞ୍ଚଗୋଟି ଆଖି । ଦୁଇଟା ଆଖି ମୁଣ୍ଡ ଉପରେ ଥାଏ; ଏହା ବଡ଼ ଓ ତା ଉପରେ ଜାଲ ବନ୍ଧା ହେଲା ପରି ଦେଖାଯାଏ । ତା ତଳକୁ ଆମର ଚୁଲି ଝିଙ୍କା ପରି ଛୋଟ ଅନ୍ତ ଟିକି ଟିକି ଆଖି ରହିଥାଏ । ଏତେ ଆଖି ଥିଲେ ମଧ୍ୟ ଅନ୍ୟ ଜୀବ ତୁଳନାରେ ଏହାର ଦୃଷ୍ଟିଶକ୍ତି ଅତି କମ୍ । କିନ୍ତୁ ବାସନା ବାରିବାରେ ଏ ଖୁବ୍ ଧୁରନ୍ଧର; ଅଥଚ ଏମାନଙ୍କର ନାକ ନାହିଁ । ବହୁ ଦୂରରୁ ଏମାନେ ବାସନା ବାରି ଉଡ଼ିଆସନ୍ତି ।

ମାଛିର ପାଟି ଏତେ ସାନ ଯେ, କେହ୍ବକେହ୍ବ କହିଥାଆନ୍ତି, ତାର ପାଟି ନାହିଁ; କେବଳ ଜଭ ଅଛି । ଜଭ ମୁହଁ ଭିତରକୁ ନେବା ଓ ପଦାକୁ ଆଣିବା ପାଇଁ ଯେଉଁ ଛିଦ୍ର ଅଛି, ତାକୁ ପାଟି କୁହାଯିବା ଅସଙ୍ଗତ ନୁହେ ।

ମାଛି ସେହ୍ବ ଠିକ ପାଟିରେ ଖାଦ୍ୟଦ୍ରବ୍ୟରୁ ରସତକ ଶୋଷି- ନିଏ । ଯେଉଁଠାରେ ଟିକିଏ ଟାଣ 'ଜନିଷ ପାଏ, ସେଥିରେ ତାର ମୁନିଆଁ ଜଭ ଗଳାଇ ଫୋଡ଼ିଦିଏ, ଭିତରୁ ରସ ଟାଣିଆଣେ । ପଣ୍ଡିତମାନେ ହିସାବ କରି କହନ୍ତି; ମାଛିର ଜଭ ଆକାର ତୁଳନାରେ ଯେତେ ଟାଣ, ହାତିଦାନ୍ତ ସେ ଅନୁପାତରେ ଦଶ ଭାଗରୁ ଭାଗେ ବି ଟାଣ ହେବ ନାହିଁ । ଜଭ ଅଗ ପୁଣି ଦୁଇ ଫାଳ ହୋଇଥାଏ । ଏହି ଦୁଇ ଫାଳକୁ ଏକାଠି ଷଣ୍ଢୁଆସି ପରି କରି ମାଛି ନିଜ ପେଟ ଭିତରକୁ ରସ ଟାଣିନିଏ ।

ବହୁତ ଭଳି ଟାଣ ଜନିଷ ପାଟିରେ ପୂରାଇ ଖାଇବା ମାଛି ପକ୍ଷରେ ଅସମ୍ଭବ । ତେଣୁ ସେଭଳି ଜନିଷ ଉପରେ ବସିଲେ ସେ ପାଟିରୁ ଲାଳ ବାହାର କରି ତାକୁ ଓଦା କରିଦିଏ । ତାହା ତରଳ ହୋଇଗଲେ ରସ ଶୋଷିନିଏ ।

## ମାଛିଙ୍କ ଦାଉରୁ କପରି ରକ୍ଷା ମିଳିବ

ଆମରି ଏଇ ବଡ଼ ଶତ୍ରୁ ମାଛି ଉପଦ୍ରବରୁ ରକ୍ଷାପାଇବା ପାଇଁ ଡାକ୍ତରମାନେ କହନ୍ତି, ସବୁ ସମୟରେ ଖାଦ୍ୟପଦାର୍ଥ ଭଲରୂପେ ଘୋଡ଼ାଇ ରଖିବ । ଯେଉଁଭଳି ଗୋଟିଏ ହେଲେ ମାଛି ସେଥିରେ ନ ବସେ, ତାର ବ୍ୟବସ୍ଥା କରିବ । ସର୍ବଦା ଗରମ ଗରମ ଖାଦ୍ୟ ଖାଇବ । ଖାଦ୍ୟପଦାର୍ଥରେ ମାଛି ଯେପରି ବସି ନ

ପାରନ୍ତି, ସେଥିପାଇଁ କେବ୍ଵ କେବ୍ଵ ମଣାର ଭିତରେ ବସି ଖାଇବାର ଶୁଣାଯାଏ । ପଙ୍ଖା ପ୍ରଭୃତି ବୁଲାଇ ଯୋରରେ ପବନ କଲେ କମ୍ବା ଝୁଣା ବା ସେଣ୍ଟଭଳ କଣ୍ଟ ଧୂଆଁ ଦେଲେ ମାଛି ସେ ସ୍ଥାନରେ ରହନ୍ତି ନାହିଁ ।

ମାଛି ମାରିବା ପାଇଁ ଏବେ ନାନା ପ୍ରକାର ବ୍ୟବସ୍ଥା ହେଲାଣି । ଡ଼.ଡ଼.ଟି.; ଗାମାକ୍ସିନ୍, ଫ୍ଲିଟ, ବ୍ଲିଚିଂ ପାଉଡର ପ୍ରଭୃତି କେତେକ ପ୍ରକାର ବିଷ ଔଷଧ ଏବେ ବାହାରିଛି । ତାକୁ ପକାଇଲେ ମାଛି ମରିଯିବେ ଓ କେତେକ ସମୟ ପାଇଁ ଆଉ ସେ ସ୍ଥାନକୁ ନୂଆ ମାଛି ଆସିବେ ନାହିଁ । ଫିନାଇଲ ପାଣି ପକାଇଲେ ମଧ୍ୟ ମାଛି ଉପଦ୍ରବ କଣ୍ଟ ସମୟ ପାଇଁ କମିଯାଏ ।

ଘର ପାଖଆଖ ଅଞ୍ଚଳରେ କୌଣସି ଅଳଆ ଜମା କରିବା ବା ଖତ ଗଦା କରିବା ଉଚିତ ନୁହେ । ଯଦି କୌଣସିଠାରେ ଅଳଆ ବା ଖତଗଦା ଥାଏ, ତେବେ ତା ଉପରେ ଖତ୍ଵନ୍ଦନ ପରେପରେ ଥରକୁଥର ବିଷ ଔଷଧ ପକାଇବ । କେତେସିର୍ଣ୍ଣ ଢାଳିଲେ ଅଣ୍ଡାସବୁ ମରିଯିବେ; ମାଛି ସଂଖ୍ୟା ଅଉ ବଢ଼ିପାରିବ ନାହିଁ । ସବୁବେଳେ ଘରଦ୍ଵାର ପରିଷ୍କାର ରଖିଲେ ମାଛି ବେ । ଦେଖାଯିବେ ନାହିଁ ।

## ୨—ମଶା

ମାଛି ଓ ମଶା ଦୁଇଟି ଭାଇ । ଉଭୟେ ଯେପରି ପାଳିକରି ମନୁଷ୍ୟ ଉପରେ ଆକ୍ରମଣ କରିବାକୁ ଏ ପୃଥିବୀକୁ ଆସିଛନ୍ତି । ମାଛି ପାଳି ଦିନରେ— ଆଲୁଅ ଥିବା ସମୟରେ । ମଶା ପାଳି ରାତିରେ—ସୂର୍ଯ୍ୟ ଅସ୍ତ ହେବାଠାରୁ ପୁଣି ପରଦିନ ସକାଳେ ସୂର୍ଯ୍ୟ ଉଦୟ ହେବା ପର୍ଯ୍ୟନ୍ତ ।

### ଅଙ୍ଗପ୍ରତ୍ୟଙ୍ଗ

ମାଛିପରି ମଶାର ଦୁଇଟି ଡେଣା, ଛଅଟି ଗୋଡ଼ ଓ ମୁହଁରେ ଦୁଇଟି ଶୁଣ୍ଢ । ସାଧାରଣତଃ ଆମକୁ ଏହାର ଦେହ ଦୁଇ ଭାଗରେ ବିଭକ୍ତ ହୋଇଥିଲା ପରି ଜଣାଯାଏ—ମୁଣ୍ଡ ଓ ଗଣ୍ଡି । ମାତ୍ର ଅଣୁବୀକ୍ଷଣ ଯନ୍ତ୍ରରେ ଏହି ଦେହ ତିନି ଭାଗରେ ବିଭକ୍ତ ହୋଇଥିବାର ଦେଖାଯାଏ; ଯଥା—ମୁଣ୍ଡ, ଛାତି ଓ ଗଣ୍ଡି ।

ମଶା ମାଛି ଅପେକ୍ଷା ସରୁ ଏବଂ ଲମ୍ବା । ଏହାର ଦେହଯାକ ସ୍ତରସ୍ତର ହୋଇ ଗୁଡ଼ାଏ ମୁଦିଆ ଯୋଡ଼ା ହୋଇଥିଲା ପରି ଦେଖାଯାଏ । ଗୋଡ଼ଗୁଡ଼ିକରେ ଗଣ୍ଠି ଅନେକ । ଦେହ, ଗୋଡ଼ ଓ ଶୁଣ୍ଢରେ ଟିକିଟିକି ଛୋଟ ଲୋମ ପୂରି ରହିଥାଏ ।

ମୁଣ୍ଡରେ ଦୁଇଟି ଆଖି । ପାଟି ପ୍ରାୟ ନାହିଁ କହିଲେ ଚଳେ । ଶୁଣ୍ଢ ଦୁଇଟି ଅତି ମୁନିଆଁ ଓ ତା ଦେହଯାକ କରତଧାର ପରି ହୋଇଥାଏ । ସେହି ଶୁଣ୍ଢ ସାଙ୍ଗରେ ଆଉ କେତୋଟି ସରୁ ସାନ

ଶୁଣ୍ଢ ବି ଥାଏ । ସବୁ ମଶାଙ୍କର ଏହି ସାନ ଶୁଣ୍ଢ ସଂଖ୍ୟା ସମାନ ନ ଥାଏ, କାହାର ଗୋଟିଏ, କାହାର ଦୁଇଟି; କାହାର କାହାର ଗ୍ଭରଗୋଟି ମଧ୍ୟ ଥାଏ ।

ଗ୍ରୀବା ଅଂଶରୁ ଛଅଟିଯାକ ଗୋଡ଼ ଓ ଡେଣା ଦୁଇଟି ବାହାରିଥାଏ । ଦେହ ସାଙ୍ଗରେ ମିଶି ରହିଥିଲେ ମଧ୍ୟ ଗ୍ରୀବା ଦେହ ଅପେକ୍ଷା ଟିକଏ ମୋଟା ଦେଖାଯାଏ ।

ମଶାର ଦେହ ତୁଳନାରେ ଗୋଡ଼ସବୁ ଅତି ଲମ୍ବ ।

## ଜାତିଭେଦ

ସାଧାରଣତଃ ଅଣତିରିଶ ଜାତିର ମଶା ଅଛନ୍ତି ବୋଲି ଏ ପର୍ଯ୍ୟନ୍ତ ଜଣାଯାଇଛି । ସେମାନଙ୍କ ଆକାର ପ୍ରକାର, ବସିବା ଢଙ୍ଗ ଓ କାର୍ଯ୍ୟକଳାପରୁ ସେମାନଙ୍କୁ ଏପରି ଶ୍ରେଣୀବିଭାଗ କରାଯାଇଛି ।

ସବୁ ମଶା ତ ଆମର ଅନିଷ୍ଟ କରନ୍ତି; ତେବେ ଏନୋଫିଲିସ ଶ୍ରେଣୀର ମଶା ଆମର ସବୁଠାରୁ ବଡ଼ ଶତ୍ରୁ । ଏହିମାନଙ୍କ ଯୋଗେ ଏକା ଭାରତବର୍ଷରେ ପ୍ରତିବର୍ଷ ତେର ଲକ୍ଷ ପର୍ଯ୍ୟନ୍ତ ଲୋକ ମରନ୍ତି । କେତେ ଯେ ଦୁର୍ବଳ, ଅକର୍ମଣ୍ୟ ହୋଇ କଷ୍ଟ ପାଆନ୍ତି, କେତେ ଟଙ୍କା ଖର୍ଚ୍ଚ କରନ୍ତି, ତାହା ଏଥିରୁ ସହଜରେ ଅନୁମାନ କରିହେବ ।

## ମଶାର ବାସସ୍ଥାନ

ପୃଥିବୀର ସବୁ ଦେଶରେ ଓ ସବୁ ଅଞ୍ଚଳରେ ପ୍ରାୟ ମଶା ରହିଛନ୍ତି । ତେବେ ଗ୍ରୀଷ୍ମକଟିବନ୍ଧ ଅଞ୍ଚଳ ମଧ୍ୟରେ ଏମାନଙ୍କ

ପ୍ରାଦୁର୍ଭାବ ବହୁତ ବେଶି । ବଣଜଙ୍ଗଲିଆ ସ୍ଥାନ ଓ ପଚାସଡ଼ା ପାଣି ଜମି ରହୁଥିବା ସନ୍ତସନ୍ତିଆ ଜାଗାହିଁ ଏମାନଙ୍କର ଘର । ଆମ ଘରର ଓଳିତଳେ ବା ବାଡ଼ିଭିତରେ ଦଶ ପନ୍ଦର ଦିନ ପାଣି ଜମି ରହିଥିବା ଖାଲ ବା ହାଣ୍ଡି ଖପରା ପ୍ରଭୃତି ପରୀକ୍ଷା କଲେ ଆମେ ଦେଖିବା ଯେ, ସେଠାରେ ମଶା, ମଶାଛୁଆ ଓ ମଶାଅଣ୍ଡା ସାଲୁବାଲୁ ହେଉଛନ୍ତି ।

ମଶା ଗୋଲିଆ ଓ ସ୍ଥିର ପାଣି ଉପରେ ଅଣ୍ଡା ଦିଏ । ଥରକେ ଶହଶହ ଅଣ୍ଡା ତାର ହୁଅନ୍ତି । ତାହା ଏତେ ସାନ ଯେ, ଖାଲି ଆଖିକୁ ଦେଖାଯିବ ନାହିଁ । ଦିନକ ଭିତରେ ତାହା ବଢ଼ିଯାଆନ୍ତି ଏବଂ କେତେଗୁଡ଼ିଏ ଅଣ୍ଡା ଏକାଠି ମିଶିଯାଇ ଗୋଟିଏ ଗୋଟିଏ ଦଳ ବାନ୍ଧି ନିଅନ୍ତି । ତା ଉପରେ ଏଭଳି ଏକ ତେଲିଆ ଡାଙ୍କୁଣି ଘୋଡ଼େଇ ହୋଇଯାଏ ଯେ, ପାଣି ସେ ଅଣ୍ଡାଗୁଡ଼ିକର କିଛି କ୍ଷତି କରିପାରେ ନାହିଁ । ଏହି 'ଅଣ୍ଡା-ଭେଳା' ପାଣିଉପରେ ଭାସୁଥାଏ ।




( ମଶାର ଜନ୍ମ )

୧ । ପାଣିଉପରେ ମଶା ଅଣ୍ଡା ଦେଉଅଛି । ୨। ଅଣ୍ଡାଗୁଡ଼ିକ ଭେଳା ଆକାରରେ ଭାସୁଅଛି । ୩। ପ୍ରଥମ ଅବସ୍ଥାରେ କୀଟାଣୁ । ୪। ଦ୍ୱିତୀୟ ଅବସ୍ଥାରେ କୀଟାଣୁ । ୫। କୀଟାଣୁ ପକ୍ଷୀଲଗା ମଶାରେ ପରିଣତ ହେଉଛି ।

କେତେଦିନ ପରେ ସେହି ଅଣ୍ଡାସବୁ ବଢ଼ି ପୋକ ଆକାର ଧରନ୍ତି । ସେ ପୋକଗୁଡ଼ିକ ଟିକିଏ ଲମ୍ବା । ମୁଣ୍ଡ ଓ ଲାଞ୍ଜ ପରିଷ୍କାର ଜଣାପଡ଼େ ଏବଂ ଦେହରେ ଗୁଡ଼ିଏ ଗୋଡ଼ ବାହାରିଥାଏ । ଦିନେ ଦେଢ଼ଦିନ ଭିତରେ ଏହା ବଢ଼ିଯାଏ, ତାର କେତେ ଘଣ୍ଟା ପରେ ଡେଣାଲଗା ମଶା ସେଥିରୁ ବାହାରେ ।

ଡେଣା ବାହାରିବା ସଙ୍ଗେସଙ୍ଗେ ମଶା ଉଡ଼ିଯାଇ ଖାଦ୍ୟ ଖୋଜି ବୁଲେ । ତା ପରେ ସେ ନିଜେ ଅଣ୍ଡା ଦେବାକୁ ଆରମ୍ଭ କରେ । ଏହିପରି ଗୋଟିଏ ମଶାଠାରୁ ସପ୍ତାହକ ମଧ୍ୟରେ ହଜାର ହଜାର ମଶା ଉତ୍ପନ୍ନ ହୋଇଥାଆନ୍ତି ।

ମାଛି ବର୍ଷକ ମଧ୍ୟରେ ପ୍ରାୟ ଛ ମାସ ଯାଏ ଉପଦ୍ରବ କରେ; ମାତ୍ର ମଶାର ଉପଦ୍ରବ ବର୍ଷର ବାରମାସଯାକ ଲାଗି ରହିଥାଏ ।

## ମଶାଙ୍କ ଖାଦ୍ୟ

ମନୁଷ୍ୟ ଓ ପଶୁଙ୍କ ରକ୍ତ ମଶାମାନଙ୍କର ପ୍ରଧାନ ଖାଦ୍ୟ । ତେବେ ଅଣ୍ଡିରା ମଶା ରକ୍ତ ପିଏ ନାହିଁ, ଗଛପତ୍ରର ରସ ଖାଇ ବଞ୍ଚେ । ମାଈ ମଶାହିଁ କେବଳ ରକ୍ତ ଖୋଜି ବୁଲେ । ସେ ପୁଣି ଅତି ପେଟୁ । ଗୋଟିଏ ମାଈ ମଶା ତାର ଆକାରର ଗୋଟିଏ ଅଣ୍ଡିରା ମଶାର ଖାଦ୍ୟଠାରୁ ପ୍ରାୟ ଦଶଗୁଣ ବେଶି ଖାଦ୍ୟ ଖାଇଥାଏ ।

ମଶାର ଶୁଣ୍ଢ ଦୁଇଟା ଅତି ଟାଣ ଓ ଛୁଞ୍ଚପରି ମୁନିଆଁ । ଅନ୍ଧାର ଆସିପିବା ସଙ୍ଗେସଙ୍ଗେ ହଜାର ହଜାର ସଂଖ୍ୟାରେ ମଶା

ଆସି ମଣିଷ ଓ ପଶୁ ରହୁଥିବା ସ୍ଥାନରେ ଉଡ଼ି ବୁଲନ୍ତି । ଗୋଡ଼, ହାତ, ଦେହ, ମୁହଁ, ନାକ, କାନ— ଯେଉଁଠାରେ ସୁବିଧା ପାଆନ୍ତି, ସେଠାରେ ବସି ଶୁଣ୍ଢଦ୍ୱାରା ଚମକୁ ଫୁଟାଇ ଦିଅନ୍ତି; କରତପରି ଧାରଯୁକ୍ତ ଶୁଣ୍ଢରେ ଚମ ତଳୁ ରକ୍ତ ଶୋଷିଆଣନ୍ତି । ଛୁଞ୍ଚି ବା ଆଲ୍‌ପିନରେ ଦେହକୁ ଫୋଡ଼ିଦେଲେ ଯେତିକି କଷ୍ଟ ହେବ, ମଶା ଫୋଡ଼ିଦେଲେ ସେହି ପରିମାଣରେ କଷ୍ଟ ହୋଇଥାଏ । ଏକ ସମୟରେ ଦେହଯାକ ଶହଶହ ମଶା ବସି ଚମକୁ ଫୋଡ଼ିଲେ କି ଯନ୍ତ୍ରଣା ହେବ, ତାହା ଅନୁମାନ କରିବା କଷ୍ଟକର ନୁହେଁ ।



ମଶା ଶୁଣ୍ଢ (ଅଣୁବୀକ୍ଷଣଯନ୍ତ୍ରରେ ଖୁବ୍ ବଡ଼ ଆକାରରେ ଦେଖା ହୋଇଛି)

## ମ୍ୟାଲେରିଆ ରୋଗ କିପରି ହୁଏ

ମଶା ଯଦି କେବଳ ଆମ ଦେହରୁ ରକ୍ତ ପିଇ ଚାଲିଯାଉଥାନ୍ତା, ତେବେ ତାକୁ ଆମେ ଆମର ଅତି ବଡ଼ ଶତ୍ରୁ ବୋଲି କହି ଗାଳି ଦିଅନ୍ତୁ ନାହିଁ । ମଶାର ପେଟ ତ, କେତେ ଅବା ରକ୍ତ ପିଇବ ? କିନ୍ତୁ ରକ୍ତ ପିଇବା ସଙ୍ଗେ ସଙ୍ଗେ ସେ ଆମ ଦେହରେ ରୋଗର ଜୀବାଣୁ ପୂରାଇଦେଇ ଯାଏ । ତା ଫଳରେ ଆମକୁ ମାଲେରିଆ ଜ୍ୱର, ବାତଜ୍ୱର, ହଳଦିଆ ଜ୍ୱର ପ୍ରଭୃତି ଦୁଃସାଧ୍ୟ ରୋଗ



( ଏନୋଫିଲିସ ମଶା )

ଧରେ । ଲୋକେ ବହୁତ ଦୁଃଖ କଷ୍ଟ ପାଆନ୍ତି, ହଜାର ହଜାର ସଂଖ୍ୟାରେ ମରନ୍ତି ।

ଏନୋଫିଲିସ ମଶାନ୍ତି ମାଲେରିଆ ରୋଗର ବାହକ । ଏହା ଦେହରେ ମାଲେରିଆ ରୋଗର ଜୀବାଣୁ ରହିଥାଏ । ଏ କାମୁଡ଼ ଦେହରୁ ରକ୍ତ ଶୋଷିନେବା ସଙ୍ଗେ ସଙ୍ଗେ ସେହି ଜୀବାଣୁରୁ କେତୋଟି ଆମ ରକ୍ତ ସହିତ ମିଶିଯାଆନ୍ତି । ରକ୍ତରେ ମିଶି ତାର ସଂଖ୍ୟା ଏଭଳି ପ୍ରବଳ ଭାବରେ ବଢ଼ିବାକୁ ଲାଗେ ଯେ, ସାମାନ୍ୟ କେତେ ଦିନ ବା କେତେ ଘଣ୍ଟା ମଧ୍ୟରେ ଆମ ଦେହଯାକ ଲକ୍ଷଲକ୍ଷ ଜୀବାଣୁ ଖେଳିବୁଲନ୍ତି । ସେମାନେ ରକ୍ତରେ ଥିବା ଲାଲକଣିକାଗୁଡ଼ିକ ଖାଇଯାଆନ୍ତି । ରକ୍ତ ସାଙ୍ଗରେ



ମଶା ମନୁଷ୍ୟ ଦେହର ଚମ ଫୋଡ଼ି ରକ୍ତ ଶୋଷୁଅଛି ଓ ରୋଗର ଜୀବାଣୁ ଛାଡ଼ୁଛି । (ତଳେ ଗୋଲ ଦାଗଗୁଡ଼ିକ ରକ୍ତର ନାଲି-କଣିକା, ପ୍ରକୃତ ଆକାରଠାରୁ ଶହେଗୁଣ ବଡ଼)

ସେମାନଙ୍କ କଳା ଦେହକୁ ଏଭଳି ଭାବରେ ମିଶାଇ ଦିଅନ୍ତି ଯେ, ସମସ୍ତ ଶରୀରର ରକ୍ତ କଳା ଦେଖାଯାଏ । ତା ଫଳରେ ଲୋକ ଜରରେ ପଡ଼େ ଓ ଛଟପଟ ହୁଏ । ଶେଷରେ ମରି ସେହି ଛଟ-ପଟରୁ ରକ୍ଷା ପାଏ ।

ମ୍ୟାଲେରିଆ ଜୀବାଣୁ ଯାହା ରକ୍ତରେ ପ୍ରବେଶ କରିଥାଏ, ତାକୁ କାମୁଡ଼ି ପ୍ରାୟ ଯେଉଁ ମଶା ରକ୍ତ ପିଏ, ତା ପେଟକୁ ମଧ୍ୟ ସେହି



( ମଶା ରକ୍ତରେ ମାଲେରିଆ ଜୀବାଣୁ ଗୁଞ୍ଜୁ ଅଛି )

(୧) ମଶା ମଣିଷ ଦେହର ଚମ ଫୁଟାଇ ରକ୍ତରେ ମାଲେରିଆ ଜୀବାଣୁ ଗୁଞ୍ଜୁଛି । (୨) ଲାଲ ରକ୍ତକଣିକାରେ ମାଲେରିଆ ଜୀବାଣୁ ପଶି ନିଜର ସଂଖ୍ୟା ବୃଦ୍ଧି କରୁଛି । (୩) ଜୀବାଣୁ ରକ୍ତକଣିକା ଭିତରେ କ୍ରମଶଃ ନିଜର କାୟା [illegible] କଲାଣି । (୪) ଜୀବାଣୁ ସଂଖ୍ୟା ବଢ଼ି-ଚାଲିଛି । (୫) ଜୀବାଣୁ ପ୍ରଭାବରେ ଲାଲ ରକ୍ତ କ୍ରମେ କଳା ହୋଇଯାଉଛି ।

(ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ପ୍ରକୃତ ଆକାରଠାରୁ ପ୍ରାୟ ଶହେ ଗୁଣରୁ ବେଶି ବଡ଼ ଆକାରରେ ଦେଖାଯାଉଛି)

ଜୀବାଣୁ ଯାଏ । ସେ ମଶା ସେଠାରୁ ଯାଇ ଅନ୍ୟ ଲୋକକୁ କାମୁଡ଼ିଲେ ତା ଦେହରେ ଜୀବାଣୁ ପ୍ରବେଶ କରେ ଓ ସେ ମାଲେରିଆରେ ପଡ଼େ । ଏହିପରି ଗୋଟିଏ ଗୋଟିଏ ମଶା ବହୁତ ଲୋକଙ୍କ ଦେହରେ ଅଳ୍ପ ସମୟରେ ମାଲେରିଆ ରୋଗ ଖେଳାଇ-ଦିଅନ୍ତି । ଯେଉଁଠାରେ ଲକ୍ଷଲକ୍ଷ ମଶା, ସେଠାରେ କେତେ ଶୀଘ୍ର ମାଲେରିଆ ବ୍ୟାପିଯିବ, ତାହା ସହଜରେ ଅନୁମାନ କରିହେବ ।

ମାଲେରିଆ ଇଂରାଜୀ ଶବ୍ଦ । ଏହାର ଆକ୍ଷରିକ ଅର୍ଥ 'ଖରାପ ବାୟୁ' । ସନ୍ତସନ୍ତିଆ ଜାଗାର ପାଖଆଖରେ ଏହା ବେଶି ପରିମାଣରେ ହୁଏ, ତେଣୁ ଆଗେ ଲୋକଙ୍କରେ ଧାରଣା ଥିଲା, ଖରାପ ଜଳବାୟୁ ହେତୁରୁ ଏ ରୋଗ ବ୍ୟାପୁଛି । ତେଣୁ ତାର ଏପରି ନାମ ଦିଆଯାଇଥିଲା ।

୧୮୮୦ ଖ୍ରୀଷ୍ଟାବ୍ଦରେ ଜଣେ ଫରାସୀ ଡାକ୍ତର ପ୍ରଥମେ ଘୋଷଣା କଲେ ଯେ, ମାଲେରିଆ କୌଣସି ଜୀବାଣୁ ଯୋଗୁଁ ହେଉଅଛି । ତାର ତିନି ବର୍ଷ ପରେ ଓ୍ୱାସିଂଟନର ଜଣେ ଡାକ୍ତର ଅନୁମାନ କରି କହିଲେ, ବୋଧହୁଏ ମଶାମାନେ ହିଁ ଏ ଜୀବାଣୁ ଆମ ଦେହରେ ଛାଡ଼ୁଛନ୍ତି । ଏହାଠାରୁ ସେ ଆଉ ବେଶି କିଛି କହି ପାରିଲେ ନାହିଁ । ୧୮୯୮ରେ ସାର ରୋନାଲ୍ଡ୍ ରସ୍ ନାମକ ଜଣେ ଇଂରେଜ ଡାକ୍ତର କଲିକତାରେ ଥିଲେ । ସେ ମାଲେରିଆ ସମ୍ପର୍କରେ ଜୀବନବ୍ୟାପୀ ଗବେଷଣା କରି ପ୍ରଚାର କଲେ ଯେ, ମଶା ବିଶେଷତଃ ଏନୋଫେଲିସ ମଶାହିଁ ଏ ରୋଗର ଏକମାତ୍ର କାରଣ । ସେହିଦିନଠାରୁ ମଶାଙ୍କର ପ୍ରକୃତ ପରିଚୟ ମିଳିଲା ଏବଂ କିପରି ମଶାବଂଶ ଲୋପ କରାଯିବ, ତାହା ଚିନ୍ତା କରାଗଲା । ମାତ୍ର ମଶାବଂଶ ପୁରାଣର ରକ୍ତବୀର୍ଯ୍ୟ ଭଳି ଏପରି ଭାବରେ

ବଢ଼ିଯାଏ ଯେ, ଯେତେ ଯାହା ଉପାୟ କଲେ ମଧ ଦେଶକୁ ମଶାଶୂନ୍ୟ କରିବା ଏପର୍ଯ୍ୟନ୍ତ ସମ୍ଭବ ହୋଇ ନାହିଁ ।

୧୯୦୪ ମସିହାରେ ପାନାମା କେନାଲ୍ ଖୋଳା କାମ ଆରମ୍ଭ ହେଲା । ସେ ସଂକ୍ରାନ୍ତରେ ଇଞ୍ଜିନିୟରଙ୍କ ଠାରୁ ଆରମ୍ଭ କରି କୁଲି ପର୍ଯ୍ୟନ୍ତ ପ୍ରାୟ ଦଶ ହଜାର ଲୋକ ସେଠାକୁ ଆସି କାମରେ ଲାଗିଲେ ଓ ସେଠାରେ ଗୋଟିଏ ସହର ଗଢ଼ି ଉଠିଲା । ମାତ୍ର ସେ ସ୍ଥାନଟା ସନ୍ତସନ୍ତିଆ ଓ ଶ୍ରେଷ୍ଠ ବୁଦା ଘାସରେ ପୂର୍ଣ୍ଣ । ଲୋକମାନେ ତମ୍ବୁ ପକାଇ ରହିବା ପରେପରେ ମାଲେରିଆରେ ପଡ଼ିଲେ; ପ୍ରତ୍ୟହ ଶହଶହ ମରିବାକୁ ଲାଗିଲେ । କେବଳ ମନୁଷ୍ୟ ନୁହନ୍ତି, ସାଙ୍ଗରେ ଆସିଥିବା ଘୋଡ଼ା, ଗାଈ ଗଧ ପ୍ରଭୃତି ପଶୁ ମଧ ଏହି ଜ୍ୱରରେ ପଡ଼ି ମଲେ । ଶେଷକୁ ସେଠାରେ ରହି କାମ କରିବାକୁ ଆଉ କେହି ରାଜି ହେଲେ ନାହିଁ; ସେ ସ୍ଥାନ ଛାଡ଼ି ପଳାଇଗଲେ । କାମ ପ୍ରାୟ ବର୍ଷକ ପର୍ଯ୍ୟନ୍ତ ବନ୍ଦ ହୋଇଗଲା । ଶେଷକୁ ଡାକ୍ତର ଓ ବିଶେଷଜ୍ଞ ଆସି ସେଠା ବଣଜଙ୍ଗଲ ସଫା କଲେ; ସନ୍ତସନ୍ତିଆ ଜାଗାକୁ ଉଚ୍ଚ ଓ ଶୁଖିଲା କରାଇଲେ । ତା ଫଳରେ ମଶା ବଂଶ ଏକାବେଳକେ ଲୋପ ପାଇଗଲେ । ତା ପରେ କାମ ଆରମ୍ଭ ହେଲା ଓ ୧୯୧୪ ମସିହାରେ ଶେଷ ହେଲା ।



(କ୍ୟୁଲେକ୍ସ ମଶା)

ଆମ ଓଡ଼ିଶାରେ ବିଶେଷତଃ ପୁରୀ ଜିଲାରେ ବାତଜ୍ୱର କଥା କିଏ ନ ଜାଣେ ? ଏ ଜ୍ୱର ଯାହାକୁ ଧରେ, ଜୀବନବ୍ୟାପୀ

ତାକୁ ଯନ୍ତ୍ରଣା ହୁଏ । ଗୋଡ଼, ହାତ ଫୁଲିଯାଏ, ରୋଗୀ ଏକା-ବେଳକେ ଅକର୍ମଣ୍ୟ ହୋଇପଡ଼େ । ଏହା ଖ୍ୟାତଜର କ୍ୟୁଲେକ୍ସ ନାମକ ମଶା ଯୋଗେ ହିଁ ବ୍ୟାପିଥାଏ ।

ଆଫ୍ରିକାରେ ହଳଦିଆ ଜ୍ୱର ଅତି ଭୀଷଣ ଭାବରେ ଦେଖାଯାଏ । ଏ ଜ୍ୱର ବି ଏହି ମଶାଙ୍କ ଲାଗି ହୁଏ ।

## ପ୍ରତିକାର କଅଣ ?

ମଶାବଂଶ ଯେପରି ବୃଦ୍ଧି ନ ପାଇବ, ସେଥିପାଇଁ ଘର ପାଖରେ ଥିବା ପଚା ସଢ଼ା ପାଣି, ଖାଲ ବା ସନ୍ତସନ୍ତିଆ ଜାଗାସବୁ ପରିଷ୍କାର କରିଦେବାକୁ ହେବ । ପାଖଆଖ ଅଞ୍ଚଳରୁ ଜଙ୍ଗଲ କାଟି ସଫା କରିବାକୁ ପଡ଼ିବ । ପାଖରେ ଥିବା ନାଳ, ପୋଖରୀ, ଖାଲ ପ୍ରଭୃତିରେ କେରୋସିନ, ଡି. ଡି. ଟି. ଆଦି ପକାଇଲେ ମଶାର ଅଣ୍ଡା ମରିଯିବେ; ତେଣୁ ମଶାମାନଙ୍କ ସଂଖ୍ୟା ଆଉ ବଢ଼ି ପାରିବ ନାହିଁ ।

ମଶା କାମୁଡ଼ାରୁ ରକ୍ଷା ପାଇବା ପାଇଁ ଆମ୍ଭେମାନେ ରାତିରେ ମଶାରି ଟାଣି ଶୋଉ । ଆମ ଦେଶରେ ମଶାରି କରିବା ପାଇଁ ପଇସା ବା କେତେ ଜଣଙ୍କ ହାତରେ ଅଛି ? ସେଥିପାଇଁ ଗାଁଗହଳରେ ଲୋକମାନେ ରାତିରେ ଶୋଇବା ଘରେ ବା ଘର ପାଖରେ ଧୂଆଁ ଦିଅନ୍ତି । ଗାଈ, ଗୋରୁ, ଛେଳି ପ୍ରଭୃତି ଗୃହପାଳିତ ପଶୁ ରହୁଥିବା ଗୁହାଳରେ ତ ପ୍ରତିଦିନ ରାତିରେ ଧୂଆଁ ଦେବା ଆମ ଦେଶରେ ଏକ ପ୍ରକାର ନିୟମ ହୋଇ ରହିଛି ।

ଘରେ କେରୋସିନ୍, ଡି. ଡି. ଟି. ପ୍ରଭୃତି ତେଲ ପକାଇଲେ କେତେକ ସମୟ ପାଇଁ ମଶାଙ୍କ କାମୁଡ଼ାରୁ ରକ୍ଷା ମିଳିଥାଏ । ହଳଦୀ

କିମ୍ବା ଚନ୍ଦନ ଦେହରେ ବୋଳିହୋଇ ଶୋଇଲେ ରାତିରେ ଆଉ ମଶା କାମୁଡ଼ିପାରନ୍ତି ନାହିଁ ।

ଘରପାଖରେ ବହୁ ପରିମାଣରେ ତୁଳସୀ ଗଛ ଲଗାଇଲେ ମଶା କମିଯାଆନ୍ତି । ଶୋଇବା ବିଛଣାରେ ତୁଳସୀପତ୍ର ରସ କିଛି ଛିଞ୍ଚିଦେଲେ ମଶା ଆଉ କାମୁଡ଼ିବେ ନାହିଁ ।

ଜଣେ ସାହେବ ଲେଖିଛନ୍ତି—ବମ୍ବେ ସହରରେ ଭିକ୍ଟୋରିଆ ବଗିଚ୍ଚ ଓ ଆଲବର୍ଟ ଯାଦୁଘର ଯେତେବେଳେ ତିଆରି ହେଲା, ସେତେବେଳେ ସେଠାରେ ମଶା ଉପଦ୍ରବ ବହୁତ ବେଶି ଥିଲା । ଯେତେ ଲୋକ କାମ କରୁଥିଲେ, ପ୍ରାୟ ସମସ୍ତେ ମାଲେରିଆ ଜ୍ୱରରେ ପଡ଼ିଲେ, କେତେକ ମଲେ । ଜଣେ ପଣ୍ଡିତଙ୍କ କଥା ଅନୁସାରେ ସେ ଅଞ୍ଚଳର ଚାରିଆଡ଼େ ତୁଳସୀ ବଗିଚ୍ଚ କରି ଦିଆଗଲା । ମାସେ ଦୁଇ ମାସ ମଧ୍ୟରେ ଗଛସବୁ ବଢ଼ିଯିବା ସଙ୍ଗେ ସଙ୍ଗେ ମାଲେରିଆ କ୍ରମେ କମିଆସିଲା ।

ପ୍ରଥମ ମହାଯୁଦ୍ଧ ବେଳେ ମେସୋପଟେମିଆ ଗୋଟିଏ ପ୍ରଧାନ ଯୁଦ୍ଧଘାଟୀ ଥିଲା । ବହୁତ ଭାରତୀୟ ସୈନ୍ୟ ସେଠାରେ ରହିଥିଲେ । ଓଡ଼ିଶାର ସ୍ୱର୍ଗତ ଡାକ୍ତର କାପ୍ଟେନ୍ କ୍ଷେତ୍ରମୋହନ ରାୟ ସେମାନଙ୍କ ସହିତ ଥାଆନ୍ତି । ଯୁଦ୍ଧକ୍ଷେତ୍ର କଥା ବର୍ଣ୍ଣନା କରି ସେ କହୁଥିଲେ, "ଭାରତୀୟ ସୈନ୍ୟମାନେ ସେଠାରେ ପହଞ୍ଚିବାର ଚାରି ଛଅ ଦିନ ମଧ୍ୟରେ ବହୁସଂଖ୍ୟକ ସୈନ୍ୟ ମାଲେରିଆ ଜ୍ୱରରେ ପଡ଼ିଲେ । ଏତେ ଲୋକଙ୍କୁ ଚିକିତ୍ସା କରିବା ଅସମ୍ଭବ ହୋଇଉଠିଲା । ଚିକିତ୍ସା କଲେ କଅଣ ବା ହେବ ? ଜ୍ୱର ଛାଡ଼ିବାର ଦୁଇ ଚାରିଦିନ ପରେ ପୁଣି ସେହି ଲୋକ ଜ୍ୱରରେ

ପଡ଼ନ୍ତ । ତେଣୁ ସେଠାରୁ ଗ୍ରୁଡଣୀ ଉଠାଇ ନେବାକୁ କର୍ତ୍ତାମାନେ ସ୍ଥିର କଲେ, ମାତ୍ର ପାଖଆଖରେ ଆଉ ସୁବିଧା ସ୍ଥାନ ମିଳିଲା ନାହିଁ । ଶେଷକୁ କାପ୍‌ଟେନ୍ ରସ୍ଙ୍କ ପରାମର୍ଶରେ ଗ୍ରୁଡଣୀର ଗୃହ ପାଖରେ ବରାବର ତୁଳସୀ ବଗିଚା କରିଦିଆଗଲା । କେତେଦିନ ପରେ ଆଉ ମଶା ଦେଖାଗଲେ ନାହିଁ କି କାହାରିକୁ ମାଲେରିଆ ଧଇଲା ନାହିଁ ।

ଆମ ଦେଶରୁ ମଶାବଂଶ ଲୋପ କରିବା ଓ ତା ଫଳରେ ମାଲେରିଆ ରୋଗ ସମ୍ପୂର୍ଣ୍ଣ ଦୂର କରିବା ବର୍ତ୍ତମାନ ସରକାରଙ୍କର ପ୍ରଧାନ କାମ ହୋଇଛି । ସେଥିପାଇଁ ପ୍ରତିବର୍ଷ ବହୁତ ଟଙ୍କା ଖର୍ଚ୍ଚ ହୋଇ ଗ୍ରାମ, ସହର ସବୁଆଡ଼େ ଘରମାନଙ୍କରେ ମଶାମରା ଔଷଧ ମାଗଣା ପଡ଼ୁଛି; ପଚୁସଡ଼ା ପାଣି ଥିବା ଖାଲ, ଗାଡ଼ିଆ, ନଳା ଏବଂ ଅରମା ବଣ ସଫା କରାଯାଉଅଛି ।

———

# ବେଙ୍ଗୁଲୀ ବେଙ୍ଗୁଲୀ ପାଣି ଦେ

ଦୁଆରେ କମ୍ବା ଦାଣ୍ଡରେ ବେଙ୍ଗଟିଏ ଡେଇଁଡେଇଁ ଯିବାର ଦେଖିଲେ କେତେକ ଶ୍ରେଷ୍ଠ ପିଲା ଡରିଯାନ୍ତି; ପୁଣି କେହି କେହି ତାକୁ ଧରିବାକୁ ଦଉଡ଼ନ୍ତି । ଆଉ କେତେକ ପିଲା ଡରନ୍ତି ନାହିଁ କି ବେଙ୍ଗକୁ ଧରିବା ପାଇଁ ସାହସ ସେମାନଙ୍କର ନ ଥାଏ । ସେମାନେ କେବଳ ପାଖରେ ଠିଆହୋଇ ତାଳିମାରି ଗୀତ ବୋଲନ୍ତି—

"ବେଙ୍ଗୁଲୀ ବେଙ୍ଗୁଲୀ ପାଣି ଦେ; ନଈ ସମୁଦ୍ର ପୂରାଇ ଦେ ।"



୧

ବେଙ୍ଗ ସେମାନଙ୍କ କଥା ବୁଝି ପାରୁ ବା ନ ପାରୁ ତାକୁ ଚିଡ଼ାଇବା ପାଇଁ ପିଲାମାନେ ଏ ଗୀତ ବୋଲିଥାଆନ୍ତି । ବେଙ୍ଗଟିଏ ହଠାତ୍ ଧରିପକାଇଲେ ଦେଖିବ, ସେ ତୁମ ହାତରେ ପରିସ୍ରା କରିଦେବ । ସେ ବୋଧହୁଏ ଗ୍ଲାନିଆରେ ଏପରି କରେ । ପିଲା ହାତ ଅସନା ହୋଇଯାଏ, ଗନ୍ଧାଏ । ତେଣୁ ସେ ସଙ୍ଗେ ସଙ୍ଗେ ବେଙ୍ଗକୁ ତଳେ ପକାଇଦିଏ । ମନେହୁଏ ଏଇଥିପାଇଁ ଏପରି ଗୀତ ସୃଷ୍ଟି ହୋଇଛି ।

ଗାଁମାନଙ୍କରେ ଘରର ପାଖଆଖରେ ପୋଖରୀ, ଖାଲ, ନାଳ, ନଈ ଆଦି ଥିଲେ ବର୍ଷାଦିନେ ସନ୍ଧ୍ୟା ହେବାକ୍ଷଣି କେଁ କଟର

ରଡ଼ ଶୁଭେ । ଏହି ରଡ଼ ସ୍ୱର ଲମ୍ବାଇଲା ଭଳି ଶୁଭିଯାକ ଗୁଳିଥାଏ । ଗୋଟିଏ ଦୁଇଟି ନୁହେଁ, ହଜାର ହଜାର ବେଙ୍ଗ ଏକ ସମୟରେ ଏକାଭଳି ସ୍ୱର ଛୋଳି ବୋବାଉଥାଆନ୍ତି । ପୋଲିସ ବା ସୈନ୍ୟ ଫଉଜ ମାର୍ଚ୍ଚିଂ କରି ଗଲାବେଳେ ଯେପରି ବାଜା ବାଜେ, ଏ ଶବ୍ଦ ଠିକ୍ ସେହିପରି ଶୁଣାଯାଏ । ନିଃଶବ୍ଦ ଅନ୍ଧାର ରାତି ଏମାନଙ୍କ ଡାକରେ କୋଳାହଳପୂର୍ଣ୍ଣ ହୋଇଉଠେ ।

ବେଙ୍ଗମାନେ ପାଣିରେ, ଶୁଖିଲା ସ୍ଥାନରେ ଏବଂ ଗଛ ଉପରେ ରହନ୍ତି । ବଣୁଆ ଅନ୍ଧାରୁଆ ସ୍ଥାନକୁ ଏମାନେ ବିଶେଷ ପସନ୍ଦ କରନ୍ତି । ଦିନ ଅପେକ୍ଷା ରାତିରେ ବେଶି ପଦାକୁ ବାହାରନ୍ତି ।

## ଜାତିଭେଦ

ପଣ୍ଡିତମାନେ ହିସାବ କରି ଜାଣିଅଛନ୍ତି ଯେ, ମୋଟାମୋଟି ପ୍ରାୟ ଶହେ ଜାତିର ବେଙ୍ଗ ଅଛନ୍ତି । ପୃଥିବୀର ସବୁ ଦେଶରେ ବେଙ୍ଗ ଦେଖାଯାଆନ୍ତି । ଓଦା ସନ୍ତସନ୍ତିଆ ଅଞ୍ଚଳରେ ଏମାନଙ୍କ ସଂଖ୍ୟା ବେଶି ।

ଆମ ଗାଁମାନଙ୍କରେ ପ୍ରଧାନତଃ ପାଞ୍ଚପ୍ରକାର ବେଙ୍ଗ ଆମେ ଦେଖିବାକୁ ପାଉଁ । ଯଥା—ବ୍ରାହ୍ମଣୀ ବେଙ୍ଗ, ପାଣିବେଙ୍ଗ, ଉଆଁ ବେଙ୍ଗ, ଗଛବେଙ୍ଗ ଓ କୁଜିବେଙ୍ଗ । ଆଉ ମଧ୍ୟ ଅନେକ ଜାତିର ବେଙ୍ଗ ଅଛନ୍ତି; ମାତ୍ର ସେମାନଙ୍କୁ କୌଣସି ପ୍ରକାର ବିଶେଷ ଭାବରେ ଶ୍ରେଣୀବିଭାଗ କରାଯାଇ ନାହିଁ ।

ବ୍ରାହ୍ମଣୀ ବେଙ୍ଗର ଆକାର ଅତି ବଡ଼, ପେଟଟା ଡୋଲପରି ହୋଇଥାଏ । ଏହା ପାଣି ଭିତରେ ଅଧିକାଂଶ ସମୟ ରହେ'

ପୋଖରୀ କୂଳକୁ ଲଗି କଅଁାବୁଦା ବା ଆଉ କଣ୍ଟା ଅରମା ସ୍ଥାନ



(ବ୍ରାହ୍ମଣୀ ବେଙ୍ଗ)

ଥିଲେ, ସେଠାରେ ସେ ନିଶ୍ଚିନ୍ତରେ ବାସ କରେ । ଦେହକୁ ଚାହିଁ ଏହାର ପାଟି ମଧ୍ୟ ଅତି ବଡ଼ । ଏହି ବେଙ୍ଗରୁ ଗୋଟିଏ ଦୁଇଟି ବୋବାଇଲେ ପାଖରେ ଥିବା ଲୋକମାନଙ୍କର କାନ ଅତଡ଼ା ପଡ଼େ; ରାତିରେ ଅନେକ ଦୂରକୁ ମଧ୍ୟ ସେ ଡାକ ଶୁଭେ ।

ପାଣିବେଙ୍ଗ ନାମରୁ ସଫା ବୁଝାଯାଏ ଯେ, ଏହା ସବୁ ସମୟରେ ପାଣି ଭିତରେ ରହେ । କୌଣସି ବେଙ୍ଗ ମାଛଙ୍କ ଭଳି ଗଭୀର ପାଣିକୁ ଯାଆନ୍ତି ନାହିଁ । ଅତି ବେଶି ହେଲେ ପାଣି ଭିତରେ ଏକଫୁଟ ତଳେ ଏମାନେ ଚଲବୁଲ କରନ୍ତି; କୂଳରେ ଥିବା ମାଟିରେ ଆଶ୍ରୟ ନଅନ୍ତି ।



(ପାଣିବେଙ୍ଗ)

ପାଣିବେଙ୍ଗର ଆକାର ବ୍ରାହ୍ମଣୀ ବେଙ୍ଗଠାରୁ ସାନ; ଦେହ ଉପର ସେତେ ଆବଡ଼ା ଖାବଡ଼ା ନୁହେଁ—ଚକ୍‌କଣ ପୁଣି ତେଲିଆ ।

ଡଆଁ ବେଙ୍ଗ ଆକାର ପ୍ରକାରରେ ପାଣିବେଙ୍ଗ ପରି କିନ୍ତୁ ତାଠାରୁ ଟିକିଏ ସାନ । ଏମାନଙ୍କ ଦେହ ସାମାନ୍ୟ ଲମ୍ବା; ତାହା

ସାଉଁଳିଆ ଓ ସୁନ୍ଦର ଦିଶେ । ଚମର ରଙ୍ଗ ପରିଷ୍କାର ଓ ଈଷତ୍ ହଳଦୀ ମିଶା ମାଟିଆ । ସଫା ଧଳା ଗେଙ୍ଗର ଡିଆଁ ବେଙ୍ଗ ବି ଦେଖାଯାଆନ୍ତି । ଏହି ଜାତିର କେତେକ ବେଙ୍ଗଙ୍କ ପିଠିରେ କେତୋଟି ସିଧା ସଳଖ ଗାର ପଡ଼ିଥିଲା ଭଳି ଦେଖାଯାଏ । ଏହାର ଦେହ ଅନ୍ୟ ବେଙ୍ଗଙ୍କ ଅପେକ୍ଷା ହାଡ଼ୁଆ ଓ ଟାଣ । ଅନେକ ସ୍ଥାନରେ ଏମାନଙ୍କୁ କାଠ ବେଙ୍ଗ କୁହାଯାଏ ।



( ଡିଆଁ ବେଙ୍ଗ )

ଏହି ବେଙ୍ଗଗୁଡିକ ସବୁ ସମୟରେ ଶୁଖିଲାରେ ରହନ୍ତି; ଆମ ଦୁଆରେ, ବାଡ଼ିଭିତରେ, ଦାଣ୍ଡ ପ୍ରଭୃତିରେ ଡେଇଁଥାଆନ୍ତି । ଏମାନେ ଏତେ ଯୋରରେ କୁଦା ମାରନ୍ତି ଯେ, କେହି ଧରିବାକୁ ଚେଷ୍ଟା କଲେ ସହଜରେ ଧରିପାରିବ ନାହିଁ । ଏମାନଙ୍କ ଦେହ ସାଧାରଣତଃ ତିନି ଚାରି ଇଞ୍ଚ ଲମ୍ବା । ମାତ୍ର ଏମାନେ ଥରକେ ଏହାର ଦଶ ବାରଗୁଣ ଉଚ୍ଚକୁ କୁଦା ମାରିପାରନ୍ତି । କୁଦା ମାରିବାକୁ ଆରମ୍ଭ କଲାବେଳେ ପଛଗୋଡ଼ ଦୁଇଟାକୁ ଯୋରରେ ପଛକୁ ଛାଟି ଦିଅନ୍ତି ।

ଅନେକେ କହନ୍ତି, ଏହି ବେଙ୍ଗକୁ ଧରିବାକୁ ଗଲେ ଏ ଆଖିକୁ ଡିଏଁ ଓ ଆଖି ଫୁଟାଇଦିଏ । ତେଣୁ ଏହାର ଅନ୍ୟ ଗୋଟିଏ ନାମ—ଆଖିଡିଆଁ ବେଙ୍ଗ । ବେଙ୍ଗ ଯେ ଜାଣିଶୁଣି ଶତ୍ରୁର ଆଖି ଫୁଟାଇବାକୁ ଚେଷ୍ଟା କରେ, ତା ନୁହେ । ପିଲାମାନେ ଛନ୍ଦି ବେଙ୍ଗଟିଏ ଧରିବାକୁ ଗଲେ ସାଧାରଣତଃ ନଇଁ ପଡ଼ିଥାନ୍ତି । ବେଙ୍ଗ ଡର ପାଇ ଉପରକୁ କୁଦିଲାବେଳେ ଆସି ମୁହଁ ବା ଆଖିରେ

ବାଜେ । ଗୋଡ଼ର ନଖ ବା ଦେହ ଆଖିରେ ଯୋରରେ ବାଡେଇ ହୋଇପିବାରୁ ଆଘାତ ଲାଗେ ।

ଗଛବେଙ୍ଗ ସବୁ ସମୟରେ ଗଛର ଡାଳରେ ପତ୍ର ଗହଳ ଭିତରେ ରହିଥାଏ । ଏହା ଦେହର ବର୍ଣ୍ଣ ଈଷତ୍ ଶାଗୁଆ । ସେ ଗଛର ପତ୍ର ସହିତ ନିଜକୁ ଏପରିଭାବରେ ମିଶାଇ ଦେଇଥାଏ ଯେ, ଶତ୍ରୁ ତାକୁ ସହଜରେ ଦେଖି ପାରେ ନାହିଁ । ସେ ରହୁଥିବା ଗଛରୁ ପାଖରେ ଥିବା ଆଉ ଗୋଟିଏ ଗଛକୁ ସୁବିଧାରେ ଡେଇଁ ଯାଇପାରେ । ତଳକୁ ଆସିଲେ ବଡ଼ ବଡ଼ ଘାସ, କଣ୍ଟାବୁଦା ଆଦି ଥିବା ସ୍ଥାନରେ ବୁଲି ନିଜ ଆହାର ଖୋଜେ ।


(ଗଛବେଙ୍ଗ)

କୁଜବେଙ୍ଗ ନାମରୁ ଜଣାଯାଏ, ଏହା ଅତି ସାନ । ଏହି ଜାତିର ବୟସ୍କ ବେଙ୍ଗ ଅଧଇଞ୍ଚରୁ ଖୁବ୍ ବେଶି ହେଲେ ଇଞ୍ଚେଯାଏ ଲମ୍ବ ହୋଇଥାଏ । ଏହାଠାରୁ ଅତି ସାନ ବେଙ୍ଗ ବି ଅଛନ୍ତି । ଏମାନଙ୍କୁ ଦେଖିଲେ ବେଙ୍ଗଛୁଆ ବୋଲି ମନେ ହେବ, ମାତ୍ର ଏମାନେ ଛୁଆ ନୁହନ୍ତି—ପୂରା ବୟସର ବେଙ୍ଗ ।

ଏହା ବ୍ୟତୀତ ଆମେରିକା, ବ୍ରାଜିଲ୍, ଆଫ୍ରିକା ଅଷ୍ଟ୍ରେଲିଆ ଓ ଇଉରୋପର ବିଭିନ୍ନ ଦେଶରେ ଆଉ ଅନେକ ରକମର୍ ବେଙ୍ଗ ଦେଖାଯାଆନ୍ତି । ଆମେରିକାରେ ଗୋଟିଏ ଜାତିର ବେଙ୍ଗ ଅଛନ୍ତି, ସେମାନେ ବୋଧହୁଏ ସବୁ ଜାତିର ବେଙ୍ଗଙ୍କ ଅପେକ୍ଷା ବଡ଼ । ସେମାନଙ୍କ ଦେହର ଲମ୍ବ ଆଠଇଞ୍ଚ ପର୍ଯ୍ୟନ୍ତ

ହେବ; ସେହି ଅନୁପାତରେ ମୋଟା ମଧ । ରଙ୍ଗ ଶାଗୁଆ ମିଶା ମାଟିଆ, ବେକଟା ହଳଦିଆ । ଏହି ବେଙ୍ଗର ପରମାୟୁ ସାତ ଆଠ ବର୍ଷ ହୋଇଥାଏ । ସେଥିରୁ ପିଲ୍ ଦିନ ଦୁଇ ବର୍ଷ କଟିଯାଏ ।

ବ୍ରାଜିଲରେ 'ସୁରିନାମ' ନାମକ ଗୋଟିଏ ଜାତିର ବେଙ୍ଗ ଅଛନ୍ତି । ସେମାନେ ସବୁ ସମୟରେ ପାଣିରେ ରହନ୍ତି । ସେମାନଙ୍କ ପିଠି ଚମଡ଼ା ଉପରେ ଗ୍ରେଟ ଗ୍ରେଟ କଣ୍ଟାଭଳି ଆବୁ ବାହାରିଥାଏ । ତାହା ଠିକ୍ ଘାଚାଗ୍ରସ ବା ପାଁପୋଛ ପରି ... ଯାଏ । ଏହି ବେଙ୍ଗର ପିଠି... ଥିବା ସେହି କଣ୍ଟା ସନ୍ଧିରେ ... ଛୁଆଗୁଡ଼ିକ ରହିଥା... ସେହିପରି



(ବ୍ରାଜିଲର 'ସୁରିନାମ' ବେଙ୍ଗ)

ଛୁଆଙ୍କୁ ପିଠିରେ ବୋହି ସେ ପାଣିରେ ପହଁ... ଖିଆପିଆ, ଚୂଲବୁଲ କରେ । ଛୁଆଗୁଡ଼ିକ ସେଠାରେ ନିରାପ... ବଢ଼ୁଥି ଦିନଯାଏ ରହନ୍ତି । ବଡ଼ ହୋଇଗଲେ, ନିଜେ ପାଣିରେ ପ...ରିବାର ଶକ୍ତି ପାଇଲେ ସେଠାରୁ ଚାଲିଆସନ୍ତି ।

ସେହି ବ୍ରାଜିଲରେ ଆଉ ଗୋଟାଏ ଜାତିର ବେ... ଅଛନ୍ତି, ସେମାନଙ୍କ ମୁଣ୍ଡରେ ଠିକ୍ ଆଖି ଉପରକୁ ଦୁଇଟା ଶିଙ୍ଘ ବା... ଥାଏ । ଏ ଶିଙ୍ଘ ଚମଡ଼ାରେ ତିଆରି, ତେଣୁ ପଶୁ ଶିଙ୍ଘ ପରି ଟାଣ ... । ଏ ବେଙ୍ଗ ବଡ଼ ରାଗୀ ଓ ହିଂସ୍ର । କୁକୁର କି ବିଲୁଆ କେହି ... ମଣ କରିବାକୁ ଆସୁଥିବାର ଦେଖିଲେ, ଆଖିପିଛୁଳାକେ ଏ ... ମୁହଁ ଉପରକୁ କୁଦିପଡ଼େ । ଶତ୍ରୁ ଏହାକୁ ଧରିବା ପାଇଁ ... ଛି

ଟମଲ୍ କରଦେବା ସଙ୍ଗେସଙ୍ଗେ ଏ ବେଙ୍ଗ ତା ମୁହଁର ଗୋଟିଏ ପାଖ ଥୋମଣିକୁ କାମୁଡ଼ ଧରେ । ଏତେ ଜୋରରେ କାମୁଡ଼େ ଯେ,



( ଶିଙ୍ଗ ଥିବା ବେଙ୍ଗ )

କୁକୁର ବା ବିଲୁଆ ଝାଙ୍କଝାଙ୍କ ଡାକ ଛାଡ଼ି ସେଠାରୁ ପଳାଇ ଯାଆନ୍ତି ।

ଆଫ୍ରିକାରେ ଏକ ପ୍ରକାର ଗଛବେଙ୍ଗ ଅଛନ୍ତି; ସେମାନଙ୍କ ମୁହଁ ତଳେ ବେକ ପାଖରେ ଗୋଟାଏ ବଡ଼ ଥଳୀ ରହିଥାଏ । ଏ ବେଙ୍ଗ ଆଁ କରି ପବନ ଶୋଷିଲା-ବେଳେ ଓ ତାହା ଛାଡ଼ିଲାବେଳେ ସୁ ସୁ ଶବ୍ଦ ଶୁଭେ । ଏହା ଠିକ୍ ବଂଶୀ ବାଜିଲାପରି ଦୂରରୁ ଶୁଣାଯାଏ—ତେଣୁ ଏ ବେଙ୍ଗର ନାମ 'ବଂଶୀ ବଜା' ବେଙ୍ଗ ।



( ଗାଲୁଆ ବେଙ୍ଗ )

ଆମେ ତାକୁ ଦେଖିଲେ 'ଗାଲୁଆ ବେଙ୍ଗ' ବୋଲି କହିବା । ସାଧାରଣତଃ ସନ୍ଧ୍ୟା ସମୟରେ କମ୍ବା ବର୍ଷାହେବା ପୂର୍ବରୁ ଥଣ୍ଡା ପବନ ବହିଲେ ଏହି ବେଙ୍ଗମାନେ ବଂଶୀ ବଜାଇବାରେ ଲାଗିଯାଆନ୍ତି । ପବନ ପଶିଲେ ବେକ-ମୁଣା ଫୁଲି ପେଣ୍ଡୁପରି ବଡ଼ ହୋଇଯାଏ । ସେ ଆସ୍ତେ ଆସ୍ତେ

ପବନ ଛାଡ଼ିଲେ ସେ ଅଳୀ ସାନ ହୋଇଯାଏ ଓ ବଂଶୀ ଫୁଙ୍କିଲାଭଳି ଶବ୍ଦ ହୁଏ ।

ଆଉ ଗୋଟିଏ ଜାତିର ବେଙ୍ଗ ଅଛନ୍ତି, ସେମାନେ ନିଜ ଛୁଆଙ୍କୁ ପିଠିରେ ଧରି ବୁଲନ୍ତି । ଛୁଆଂ ର ବହୁତ ବେଶି । ସେ ଅବା କାହାକୁ ଧରି ବୁଲିବ ? ପୁଣି ନିଜ ପିଲା ବା ପର ପିଲା ଜାଣିବ କିପରି ? ତେଣୁ ଯେ କୌଣସି ବେଙ୍ଗ ଛୁଆଟିଏ ହେଲେ ଆପତ୍ତି ନାହିଁ । ସେ ତାକୁ ପିଠିରେ ବସାଇ ଆନନ୍ଦରେ ବୁଲୁଥିବ ।




( ଛୁଆ ପିଠିରେ ବସିଛି )

## ବେଙ୍ଗର ଦେହ

ବେଙ୍ଗର ମୁହଁଟି ସରୁ ଓ ଗୋଳିଆ । ଆଖି ଦୁଇଟା ତାକୁ ଉପରେ ଡ଼ିମାଡିମା ହୋଇ ପଦାକୁ ବାହାରିଥାଏ । ଆଖି ଡୋଳାକୁ ଘୋଡ଼ାଇବା ପାଇଁ ତଳେ ଓ ଉପରେ ଦୁଇଟା ପାତଳା ଚମଡ଼ାର ପରଦା ଥାଏ । ଭୟ ପାଇଲେ କମ୍ବା ଶୋଇଲେ ସେ ଆଗ ଉପର ପରଦା ଭିତରକୁ ଡୋଳାକୁ ଟାଣିନିଏ । ତା ପରେ ସେ ପରଦା ଉପରେ ତଳର ପାତଳା ପରଦାକୁ ଢାଙ୍କିଦିଏ । ବେଙ୍ଗ ଆଖି ଏପରି ଭାବରେ ତିଆରି ଯେ, ଗୋଟିଏ ସ୍ଥାନରେ ବସି ଏକ ସମୟରେ ସେ ଚାରିଦିଗର ଦୃଶ୍ୟ ଦେଖିପାରେ ।

ଏହାର ଜିଭ ଅଦ୍‌ଭୁତ ପ୍ରକାରର । ଆମ ଜିଭର ମୂଳ ଅଂଶ ତଣ୍ଟି ସହିତ ଲାଗିଥାଏ ଓ ଅଗ ପାଟିଆଡ଼କୁ ଥାଏ । ବେଙ୍ଗର ଜିଭ

ଠିକ୍ ଏହାର ଓଲଟା । ତାର ମୂଳ ପାଟିର ଓଠ ପାଖରେ ଲଗିଥାଏ ଓ ଅଗ ଦରକାର ପଡ଼ିଲେ ତଣ୍ଟିଆଡ଼କୁ ଗୁଡ଼ିଯାଏ । ତେଣୁ ମାଛି, ମଶା କି ଅନ୍ୟ କୌଣସି କୀଟପତଙ୍ଗ ପାଇଲେ ବେଙ୍ଗ ଜିଭ ଅଗରେ ତାକୁ ଧରି ଏକାବେଳକେ ତଣ୍ଟି ପାଖକୁ ନେଇଯାଏ । ଆମ ଜିଭ ପରି ବେଙ୍ଗ ଜିଭ ଚଉଡ଼ା ନୁହେଁ; ଗୋଟିଏ ସରୁ ସୂତାଭଳି ଦେଖାଯାଏ ।

ବେଙ୍ଗର ଚାରିଗୋଟି ଗୋଡ଼; ତେବେ ପଛର ଦୁଇ ଗୋଡ଼ ଅପେକ୍ଷା ଆଗ ଗୋଡ଼ ଦୁଇଟି ସାନ ଓ ଦୁର୍ବଳ । ଏଥିରେ ଚାରୋଟି ଲେଖାଏଁ ଓ କାହାର କାହାର ତିନୋଟି ଲେଖାଏଁ ଆଙ୍ଗୁଠି ଥାଏ ।

ଅନେକ ସମୟରେ ବେଙ୍ଗର ଆଗର ଗୋଡ଼ଦୁଇଟି ହାତର କାମ ଦେଇଥାଏ । ସେ ତା ପାଟି ଅପେକ୍ଷା ବଡ଼ କୌଣସି ଜିଆ; ଝିଣ୍ଟିପିଟି ବା ପୋକ ପାଟିରେ ଧରିଲେ ତାକୁ ସଙ୍ଗେସଙ୍ଗେ ଗିଳି ଦେଇପାରେ ନାହିଁ । ସେତେବେଳେ ତାକୁ ଆଗ ଦୁଇ ଗୋଡ଼ରେ ଧରି ପାଟିଭିତରେ ମାଡ଼ିଦିଏ ।

ପଛ ଗୋଡ଼ଦୁଇଟି ଲମ୍ବା, ଟାଣ ଓ ମଜବୁତ । ଏଥିରେ ପାଞ୍ଚୋଟି ବା ଚାରୋଟି ଲେଖାଏଁ ଆଙ୍ଗୁଠି । ଏଗୁଡ଼ିକ ପତଳା ଚମଡ଼ାରେ ବନ୍ଧ ହୋଇ ରହିଥାଏ—ଠିକ୍ ହଂସପାଦ ପରି । ତା ଯୋଗେ ସେ ପାଣିରେ ସ୍ୱଚ୍ଛନ୍ଦରେ ପହଁରିପାରେ । ଏହି ପଛଗୋଡ଼ ଯୋଗେ ସେ ଅନାୟାସରେ କୁଦାମାରେ; ଆଗ ଗୋଡ଼ଦୁଇଟି କେବଳ ତାର ଭାରସାମ୍ୟ ରକ୍ଷା କରେ । ଉଚ୍ଚରୁ କୁଦି ମାଟିରେ ପଡ଼ିଲାବେଳେ ତାର ମୁହଁ ଓ ଛାତି ଛେଚା ହୋଇଯାଆନ୍ତା; ଆଗଗୋଡ଼ ଦୁଇଟି ଥିବାରୁ ତାହା ହୁଏ ନାହିଁ ।

ଅଧିକାଂଶ ବେଙ୍ଗଙ୍କ ପିଠି ଉପରର ଚମଡ଼ା ଆବଡ଼ା ଖାବଡ଼ା ହୋଇଥାଏ । ସେଠାରେ ଗୁଡ଼ିଏ ଗ୍ରେଷ୍ଟଗ୍ରେଷ୍ଟ ଅସମାନ ଆବୁ ବାହାରିଲା ପରି ଦେଖାଯାଏ । ଏହି ଚମ ଏପରିଭାବରେ ତିଆରି ଯେ, ସେଥିରେ ପାଣି ଲାଗିରହେ ନାହିଁ—ଖସିପଡ଼େ । ଯେଉଁ ଜଳୀୟ ଅଂଶ ଦେହରେ ରହିଯାଏ, ଚମ ତାହା ଶୋଷିନିଏ ।



(ଏକ୍‌ସ-ରେ ଯନ୍ତ୍ର ସାହାଯ୍ୟରେ ଦୃଶ୍ୟ- ଥିବା ବେଙ୍ଗ ଦେହ ଭିତରର ଅବସ୍ଥା)

ପଣ୍ଡିତମାନେ ଏକ୍‌ସ-ରେ ଯନ୍ତ୍ର ସାହାଯ୍ୟରେ ଏହାର ଦେହ ଭିତରର ଅଂଶ ଦେଖି-ଅଛନ୍ତି । ସେଥିରୁ ଜଣାଯାଏ, ମେରୁଦଣ୍ଡ ହାଡ଼ଟି ମୁଣ୍ଡରୁ ଶେଷ ପର୍ଯ୍ୟନ୍ତ ପଦର ପ୍ରଧାନ ଶିରାପରି ରହିଥାଏ । ସେଥିରୁ ଦେହର ଅନ୍ୟାନ୍ୟ ଅଂଶକୁ ସରୁସରୁ ହାଡ଼ ବାହାରି ଯାଇଥାଏ । ଗୁରି ଗୋଡ଼ର ହାଡ଼ ମେରୁହାଡ଼ ଅପେକ୍ଷା ଟାଣ ।

## ଜନ୍ମବୃତ୍ତାନ୍ତ

ବର୍ଷାଦିନେ ପୋଖରୀ, ଖାଲ ପ୍ରଭୃତିରେ କୂଳକୁ ଲାଗି ରହିଥିବା ବୁଦାମାନଙ୍କରେ ଧଳା ଫେଣ ମେଞ୍ଚାମେଞ୍ଚା ହୋଇ ଓହଳିଥିବାର ସମସ୍ତେ ଦେଖିଥିବ । ଏହାକୁ ବେଙ୍ଗଫୁଲ କୁହାଯାଏ । ଏହା ଭିତରେ ବେଙ୍ଗର ଡିମ୍ବ ପୂରି ରହିଥାଏ ।

ଗୋଟିଏ ଗୋଟିଏ ବେଙ୍ଗୁଲୀ ଥରକେ ଦୁଇ ହଜାରରୁ ତିନି ହଜାର ପର୍ଯ୍ୟନ୍ତ ଡିମ୍ବ ଦିଅନ୍ତି । ବଡ଼ ବେଙ୍ଗୁଲୀଙ୍କ ଡିମ୍ବ ସଂଖ୍ୟା

ଛ ହଜାରରୁ ଆଠ ହଜାରଯାଏ ହୋଇଥାଏ । ଏହି ଡିମ୍ବଗୁଡ଼ିକ ଅତି ଛୋଟ ଓ ଗୋଲ । ଗୋଟିଏ ଗୋଟିଏ ଡିମ୍ବ ଇଞ୍ଚକର ଷୋହଳ ଭାଗରୁ ଭାଗେ ଲମ୍ବା ଚଉଡ଼ା ଥିବାର ଦେଖାଯାଏ । ଏହାର ଉପର ଅଂଶ କଳା; ତଳ ଅଂଶ ଈଷତ୍ ଧଳା । ସବୁଗୁଡ଼ିକ ଡିମ୍ବ ଏକ ନାଳୁଆ ଫେଣ ଭିତରେ ଜାକିଜୁକି ହୋଇ ରହିଥାଆନ୍ତି । ସେମାନଙ୍କ ଆକାର ବଢ଼ିବା ସଙ୍ଗେସଙ୍ଗେ ବେଙ୍ଗଫୁଲର ଆକାର ବଢ଼ିଯାଏ ( ଛବି ୧ ଓ ୨ ) ଡିମ୍ବଗୁଡ଼ିକ ଏହି ଫୁଲ ଖାଇ ବଞ୍ଚିରହନ୍ତି ।



(ଅଣ୍ଡାଠାରୁ ବେଙ୍ଗ ହେବା ପର୍ଯ୍ୟନ୍ତ ବିଭିନ୍ନ ଅବସ୍ଥା)

ସାତ ଆଠଦିନ ପରେ ଏହି ଡିମ୍ବରୁ ଛୁଆ ବାହାରନ୍ତି । ସେତେବେଳେ ତାକୁ ଦେଖି କେହି କେବେହେଲେ ତାହା ବେଙ୍ଗ ଛୁଆ ବୋଲି କହିବ ନାହିଁ । ଗୋଟିଏ ଗୋଲ ମୁଣ୍ଡ ଓ ସେଥିରେ ମୋଟା ଲଙ୍ଗୁଡ଼ିଟିଏ । ପାଟି, ମୁହଁ, ଆଖି, ଗୋଡ଼ କିଛି ସେତେବେଳେ ନ ଥାଏ (ଛବି-୩) । ଅନେକ ସମୟରେ ପିଲାଏ ଏହା ମାଛ ଯାଆଁଳ ଭାବି ଭ୍ରମରେ ପଡ଼ନ୍ତି । କୌଣସି କୌଣସି ଅଞ୍ଚଳରେ ଏହି ଅବସ୍ଥାର ବେଙ୍ଗଛୁଆକୁ 'ବେଙ୍ଗପହଣା' ବୋଲି କୁହାଯାଏ । ଅନ୍ୟମାନେ ଏହାର ନାମ 'ବେଙ୍ଗପୁଟି' ଦେଇଥାନ୍ତି ।

ତ୍ରିଶଦିନ ଏହି ମୁଣ୍ଡ ଓ ଲାଙ୍ଗୁଡ଼ ବଢ଼ୁଥାଏ । ଦୁଇ ତିନି ଦିନ ପରେ ଲାଙ୍ଗୁଡ଼ରେ ଗୋଟାଏ ଚମ ପରଦା ଦେଖାଯାଏ । ତା ସାହାଯ୍ୟରେ ସେ ସୁବିଧାରେ ପାଣିରେ ପହଁରିପାରେ (ଛବି-୪) । ତା ପରେ ତା ଲାଞ୍ଜସହ ଦେହ କ୍ରମେ ଲମ୍ବା ଓ ସରୁ ହୋଇଆସେ । ଏହି ସମୟରେ ମୁହଁ ପାଖରେ ଗୋଟିଏ କଣା ଦେଖାଯାଏ । ମାଛ ତାହାର ଜାଲି ଓ ଫୁଲ ସାହାଯ୍ୟରେ ଯେପରି ନିଃଶ୍ୱାସ ନିଏ ଓ ପ୍ରଶ୍ୱାସ ଛାଡ଼େ, ବେଙ୍ଗଛୁଆ ସେହିପରି ଏ କଣା ସାହାଯ୍ୟରେ ନିଃଶ୍ୱାସ ପ୍ରଶ୍ୱାସ ନିଆଆଣିବା କରେ । ତା ପରେ ପରେ ପେଟ ଭିତରେ ହୃଦ୍‌ଯନ୍ତ୍ର ବଢ଼େ । ଏପର୍ଯ୍ୟନ୍ତ ତାହାର ପାଟି ହୋଇ ନ ଥାଏ । ପେଟରେ ହୃଦ୍‌ଯନ୍ତ୍ର ହେବା ସଙ୍ଗେ ସଙ୍ଗେ ପାଟି ହୁଏ ଓ ସେହି ପାଟିରେ ସେ କଅଁଳ ଘାସପନ୍ନ ଖାଏ, ପାଣି ପିଏ । ଏ ଅବସ୍ଥା ଆସିବାଯାଏ ସେ ତା ଲାଞ୍ଜରେ ଥିବା ଖାଦ୍ୟରସରେ ବଞ୍ଚି ରହିଥାଏ । ଏହି ସମୟରେ ମଧ୍ୟ ତାର ଆଖି ଫିଟେ ।

ଏହି ଅବସ୍ଥାରେ କେତେକ ସପ୍ତାହ କଟିଯାଏ । ବେଙ୍ଗଛୁଆ ଦିନକୁ ଦିନ ବଢ଼ୁଥାଏ ଓ ତା ଦେହର ପରିବର୍ତ୍ତନ ଘଟୁଥାଏ । କିଛିଦିନ ପରେ ଲାଞ୍ଜ ପାଖରେ ପଛଗୋଡ଼ ଦୁଇଟି ଦେଖାଯାଏ (ଛବି-୫) । ତା ପରେ ଗୁହ୍ୟପାଖରେ ଡାହାଣ ପଟରେ ଗୋଟିଏ ଚମଡ଼ା ଆବୁ ବାହାରେ । ଦିନେ ଦୁଇ ଦିନ ପରେ ସେ ଆବୁ ଫାଟି ସେଥିରୁ ଆଗଗୋଡ଼ ବାହାରିଆସେ । ତା ପରେ ଠିକ୍ ଏହିପରି ବାଁ ପାଖ ଆଗଗୋଡ଼ ମଧ୍ୟ ବାହାରିଥାଏ । ପଛଗୋଡ଼ ଦୁଇଟି ଯେପରି ଏକ ସମୟରେ ହୁଏ, ଆଗଗୋଡ଼ ଦୁଇଟି ସେପରି ନ ହୋଇ ଥରଥର ହୋଇ ବାହାରେ (ଛବି-୬) ।

ଦେହରେ ଚାରି ଗୋଡ଼ ବାହାରିଲା ବେଳକୁ ଲାଞ୍ଜଟି ସରୁ ହୋଇ ଆସିଥାଏ । କ୍ରମେ ଦେହ ବଢ଼ିବା ସଙ୍ଗେ ସଙ୍ଗେ ଲାଞ୍ଜ ଛୁଡ଼ିଆସେ (ଛବି ୭ ଓ ୮) । ଏହି ସମୟରେ ପାଟିରେ ଜିଭ ଦେଖାଯାଏ ଓ ଆଖି ଚାରିଆଡ଼କୁ ବୁଲେ । ବେଙ୍ଗଛୁଆ ନିର୍ଭୟରେ ପାଣିରେ ପହଁରି ଖେଳେ ଓ ନିଜର ଖାଦ୍ୟ ଖୋଜିବୁଲେ । ଏହି ଅବସ୍ଥାରେ କେତେଥର ସେ ଦେହର ଚମକୁ ସାପ କାତି ଛାଡ଼ିଲା ପରି ଦେହରୁ ଛଡ଼ାଇ ଅଲଗା କରିଦିଏ ଓ ସଙ୍ଗେ ସଙ୍ଗେ ତାହା ଖାଇପକାଏ ।

ଏହି ଅବସ୍ଥାରେ ସେ ବହୁତ ବେଶି ଖାଏ ଏବଂ ସେହି ପରିମାଣରେ ବଢ଼େ । ଗୋଡ଼ ଚାରୋଟି ଦୃଢ଼ ହୋଇ ଆସିଲାବେଳକୁ ଲାଙ୍ଗୁଡ଼ଟି ସମ୍ପୂର୍ଣ୍ଣ ଲୋପ ପାଇଯାଇଥାଏ । ଏତେବେଳେ ଯାଇ ସେ ଗୋଟିଏ ବେଙ୍ଗରେ ପରିଣତ ହୁଏ (ଛବି-୯) ।

ଖରା ଓ ବର୍ଷାଦିନଯାକ ବେଙ୍ଗସବୁ ପଦାରେ ବୁଲନ୍ତି । ଶୀତ-ଦିନ ଆସିଗଲେ ଓଳିତଳ ଗାତରେ, ଓଦା ମାଟି ତଳେ, ପାହାଡ଼ ଗୁମ୍ଫାଲେ ବା ସନ୍ତସନ୍ତିଆ ବଣୁଆ ଜାଗାରେ ଚୁପ୍ ହୋଇ ଶୋଇ-ରହନ୍ତି । ସେ ସମୟରେ ସେମାନେ କିଛି ଖାଆନ୍ତି ନାହିଁ । ଶୀତ ଦିନ ଚାଲିଯିବା ପରେ ପରେ ନିଦରୁ ଉଠନ୍ତି ଓ ଖାଦ୍ୟ ଖୋଜି ବାହାରନ୍ତି ।

ବେଙ୍ଗଗୁଡ଼ିକ ଆମର ଅନେକ ଉପକାର କରନ୍ତି । ଆମର ନାନାପ୍ରକାର କ୍ଷତି କରୁଥିବା ମାଛିମଶା, କୀଟ ପତଙ୍ଗ ସବୁ ଧରି ସେମାନେ ଖାଇଯାଆନ୍ତି । କେତେକ ଜାତିର ଲୋକେ ବେଙ୍ଗ ମାଂସ ଆଗ୍ରହରେ ଖାଆନ୍ତି । ଆମେରିକାରେ ବେଙ୍ଗ ବ୍ୟବସାୟ କରି କେତେକ ଲୋକ ବେଶ୍ ଧନୀ ହୋଇ ପାରିଛନ୍ତି । ସେମାନେ ନାନା

ପ୍ରକାର ବେଙ୍ଗ ପୋଷି ସେମାନଙ୍କ ବଂଶ ବଢ଼ାନ୍ତି ଓ ତାହା ଦେଶ ବିଦେଶକୁ ବିକ୍ରୀ କରନ୍ତି । ଆମ ଦେଶରେ କେଳା ପ୍ରଭୃତି ଜାତିର ଲୋକ ବର୍ଷାଦିନେ ବ୍ରାହ୍ମଣୀ ବେଙ୍ଗ ଖୋଜି ବୁଲୁଥାନ୍ତି । ସେମାନଙ୍କର ବେଙ୍ଗ ମାଂସ ଗୋଟିଏ ଭଲ ଖାଦ୍ୟ ।

ବେଙ୍ଗର ଚମ ମଧ୍ୟ ଆମର କାମରେ ଲାଗେ । ଗାଁମାନଙ୍କରେ 'ବେଙ୍ଗୀ ବାଇଦ' ବୋଲି ଗୋଟିଏ ଖେଳନା ବିକ୍ରୀ ହୁଏ । ତାହା ଏହି ବେଙ୍ଗ ଚମରେ ତିଆରି ହୋଇଥାଏ । ଆଜି କେତେକ ପ୍ରକାର ଦରକାରୀ ଜିନିଷ ମଧ୍ୟ ଏଥିରେ ହୁଏ ।

ବେଙ୍ଗଙ୍କର ଶତ୍ରୁ ଦୁନିଆରେ ବହୁତ ବେଶି । ବେଙ୍ଗ ଯେତେ ଅଣ୍ଡା ଦିଏ, ସେଗୁଡ଼ିକ ବଞ୍ଚି ରହୁଥିଲେ ଏ ପୃଥିବୀରେ ବେଙ୍ଗ ବ୍ୟତୀତ ଆଉ କୌଣସି ଜୀବ ନ ଥାନ୍ତେ । ମାତ୍ର ମାଛ, ଚଢ଼େଇ ପ୍ରଭୃତି ସେଗୁଡ଼ିକୁ ଅଣ୍ଡା ଓ ଛୁଆ ଅବସ୍ଥାରେ ବହୁ ସଂଖ୍ୟାରେ ଖାଇଯାଆନ୍ତି । ଥରକେ ଦୁଇ ହଜାର ଅଣ୍ଡାରୁ କୋଡ଼ିଏ ପଚିଶଟିରୁ ବେଶି ବେଙ୍ଗ ବାହାରନ୍ତି ନାହିଁ ।

ସାପ ବେଂଗମାନଙ୍କର ପ୍ରଧାନ ଶତ୍ରୁ । ସେ ଯେଉଁଠାରେ ବେଙ୍ଗ ଦେଖେ, ସଂଗେସଂଗେ ତାକୁ ଗିଳିଦିଏ । କେତେକ ଚଢ଼େଇ, କୁକୁର, ବିଲୁଆ ମଧ୍ୟ ବେଙ୍ଗ ଖାଇଆନ୍ତି । ଆମ ଦେଶର ସାଧାରଣ କୁକୁର ଅବଶ୍ୟ ବେଙ୍ଗ ଖାଇବାକୁ ବେଶି ଆଗ୍ରହ ଦେଖାଏ ନାହିଁ । ବୋଧହୁଏ, ତା ମାଂସ କୁକୁରକୁ ସୁଆଦ ଲାଗେ ନାହିଁ ।



ମୁଦ୍ରାକର—ପୂର୍ଣ୍ଣିମାରାଣୀ ଦାସ, ଝରଣା ପ୍ରିଣ୍ଟର୍ସ, କଟକ—୧